# ମୋ ନନା ଓ ମୁଁ

ଲେଖକ :

ଦଣ୍ଡପାଣି ପଣ୍ଡା, ଏମ୍.ଏ. ଜ୍ୟୋତିର୍ବିଦ୍ୟା ବାଚସ୍ପତି

ଲେଖକ ଓ ପ୍ରକାଶକ :

ଦଣ୍ଡପାଣି ପଣ୍ଡା, ୯୫, ମଧୁସୂଦନ ନଗର, ଭୁବନେଶ୍ୱର,

୭୫୧୦୦୧

# ମୋ ନନା ଓ ମୁଁ

ଲେଖକ :
ଦଣ୍ଡପାଣି ପଣ୍ଡା, ଏମ୍.ଏ. ଜ୍ୟୋତିର୍ବିଦ୍ୟା ବାଚସ୍ପତି

ଲେଖକ ଓ ପ୍ରକାଶକ :
ଦଣ୍ଡପାଣି ପଣ୍ଡା, ୯୫, ମଧୁସୂଦନ ନଗର, ଭୁବନେଶ୍ୱର,
୭୫୧୦୦୧

# ମୋ ନନା ଓ ମୁଁ

ଲେଖକ
ଦଣ୍ଡପାଣି ପଣ୍ଡା, ଏମ୍.ଏ.
ଜ୍ୟୋତିର୍ବିଦ୍ୟା ବାଚସ୍ପତି,
*ଲେଖକ ଓ ପ୍ରକାଶକ*
ଦଣ୍ଡପାଣି ପଣ୍ଡା, ୯୫, ମଧୁସୂଦନ ନଗର
ଭୁବନେଶ୍ୱର, ୭୫୧୦୦୧
ପୃଷ୍ଠପୋଷକ
ଶ୍ରୀମତୀ କୁନ୍ତଳା କୁମାରୀ ପଣ୍ଡା
୯୫, ମଧୁସୂଦନ ନଗର
ଭୁବନେଶ୍ୱର, ୭୫୧୦୦୧

ପୁସ୍ତକ ପ୍ରାପ୍ତିସ୍ଥାନ
ଦଣ୍ଡପାଣି ପଣ୍ଡା, ୯୫, ମଧୁସୂଦନ ନଗର
ଭୁବନେଶ୍ୱର, ୭୫୧୦୦୧
ମୁଦ୍ରଣ : ଶ୍ରୀ ନୀଳକଣ୍ଠ ପ୍ରିଣ୍ଟର୍ସ
ୟୁନିଟ-୪, ଭୁବନେଶ୍ୱର
ପ୍ରଥମ ପ୍ରକାଶ : ତା ୪.୧୧.୨୦୦୨
ଦୀପାବଳୀ ଅମାବାସ୍ୟା
ମୂଲ୍ୟ :-ଟ ୫୦ଙ୍କା (ପଚାଶ ଟଙ୍କା ମାତ୍ର)

# MO NANA O MU

*Author And Publisher*
Dandapani Panda, 95
Madhusudan
Nagar,Bhubaneswar, 751001

*Petron*
Smt. Kuntala Kumari Panda
95, Madhusudan Nagar,
Bhubaneswar, 751001



*Book Available with*
Dandapani Panda
95, M.S. Nagar, BBSR-751001

First Publication, Deepabali
Amabasya, Dt. 4.11.2002

Printed by :
Shree Nilakantha Printers
Unit-IV, Bhubaneswar

Rs. :- 50/- (Rupees Fifty only)

# ଓଁ ଶ୍ରୀ ଗଣେଶାୟ ନମଃ

# ଭୂମିକା

ମୋ ନନାଙ୍କ ଜୀବନୀ ଲେଖି ପ୍ରକାଶ କରିବା ପାଇଁ ପ୍ରବଳ ଇଚ୍ଛା ହେଲା । ପୁସ୍ତକ ପ୍ରକାଶ ଛଡ଼ା ଅନ୍ୟ କୌଣସି କୀର୍ତ୍ତି ଦୀର୍ଘସ୍ଥାୟୀ ନୁହେଁ । ତେଣୁ ତାଙ୍କର ସ୍ମୃତି ଜାଗ୍ରତ ରଖିବାକୁ ଏ ଦିଗରେ ମନ ବଳାଇଲି । ତାଙ୍କର ଜୀବନର ଘଟଣାବଳୀ ଅନ୍ୟ କାହାକୁ ପ୍ରେରଣା ଦେବ କି ନାହିଁ ତାହା ମୁଁ ଜାଣେ ନାହିଁ । କିନ୍ତୁ ମତେ ତାହା ପ୍ରେରଣା ଦେଇଛି । ଯଦି କେହି ଏଥିରୁ କିଛି ପ୍ରେରଣା ପାଆନ୍ତି ତେବେ ଭଲ କଥା ।

କିନ୍ତୁ ଏହି କାର୍ଯ୍ୟରେ ପ୍ରବୃତ୍ତି ହେଲା ବେଳକୁ ବହୁତ ଡ଼େରି ହୋଇ ଯାଇଛି । ବର୍ତ୍ତମାନ ନନା ଓ ବୋଉ ନାହାନ୍ତି । ତାଙ୍କର ସମସାମୟିକ ନିକଟସ୍ଥ ଅନ୍ତରଙ୍ଗ ପରିବାରର କିମ୍ବା ବାହାରର କୌଣସି ବ୍ୟକ୍ତି ନାହାନ୍ତି । ତେଣୁ ତାଙ୍କ ବିଷୟରେ ବିଶେଷ ତଥ୍ୟ ପାଇବା ସମ୍ଭବ ନୁହେଁ । ସେ ଯେଉଁ ସବୁ ପୁସ୍ତକ ଓ କାଗଜପତ୍ର ରଖିଥିଲେ ତାହା ମଧ୍ୟ ନଷ୍ଟ ହୋଇ ସାରିଛି । ଯାହା ହେଉ ଆଦୌ ନକରିବା ଅପେକ୍ଷା ଡ଼େରିରେ କରିବା ଭଲ ନୀତି ଅନୁସାରେ ମୁଁ ଏହା କରିବାକୁ ଇଚ୍ଛା କରିଛି । ମୋର ଯେଉଁ ଅନୁଭୂତି ଅଛି ଅନ୍ତତଃ ସେତକ ପ୍ରକାଶ କରି ମୋର ଗୁରୁଦାୟିତ୍ୱ ସଂପନ୍ନ କରିବାକୁ ଅଭିଳାଷ କରିଛି । ଏ ଦିଗରେ କେତେ ଦୂର କୃତକାର୍ଯ୍ୟ ହୋଇଛି ତାହା ଏହି ପୁସ୍ତକର ପାଠକମାନେ ବିଚାର କରିବେ ।

ନନାଙ୍କ ବିଷୟରେ ଲେଖିଲାବେଳେ ମୋ ନିଜ କଥା ସଂପୂର୍ଣ୍ଣ ଅଲଗା ରଖିବା ସଂଭବ ନୁହେଁ । ତେଣୁ ଏଥିରେ ମୋ ନିଜ କଥା ମଧ୍ୟ କିଛି ଲେଖିଛି ।

ଭୁବନେଶ୍ୱର — ବିନୀତ

ତା.୪.୧୧.୨୦୦୨ — ଦଣ୍ଡପାଣି

# ସୂଚୀ

# ଜୀବନୀ

ମୋ ନନା ଶିବନାରାୟଣ ପଣ୍ଡାଙ୍କର ଜନ୍ମ ଗଞ୍ଜାମ ଜିଲ୍ଲାର କୁକୁଡ଼ାଖଣ୍ଡି ଗ୍ରାମରେ ଏକ କୁଳୀନ ବ୍ରାହ୍ମଣ ପରିବାରରେ ହୋଇଥିଲା । ତାଙ୍କର ପିତାଙ୍କ ନାମ ବିନାୟକ ପଣ୍ଡା ଏବଂ ମାତାଙ୍କ ନାମ ବଦନୀ ଦେବୀ । ବିନାୟକ ପଣ୍ଡାଙ୍କର ଦୁଇ ଜଣ ପୁଅ ଥିଲେ, ବଡ଼ ପୁଅ ଦୀନବନ୍ଧୁ ପଣ୍ଡା ଏବଂ ସାନ ପୁଅ ମୋ ନନା ଅର୍ଥାତ୍ ଶିବନାରାୟଣ ପଣ୍ଡା । ଦୀନବନ୍ଧୁ ପଣ୍ଡାଙ୍କର ସ୍ତ୍ରୀଙ୍କ ନାମ ଶ୍ରୀମତୀ ଦେବୀ । ସେ ପାଣ୍ଡର ଖଳିର ଝିଅ ଥିଲେ । ବିନାୟକ ପଣ୍ଡାଙ୍କର ସାନ ଭାଇ ଅର୍ଥାତ୍ ମୋ ନନାଙ୍କର କକା ନରହରି ପଣ୍ଡାଙ୍କ କୌଣସି ସନ୍ତାନ ନଥାଇ ମୃତ୍ୟୁ ହୋଇଥିଲା । ତେଣୁ ମୋର ନନା କକାଙ୍କର ଦତ୍ତପୁତ୍ର ହୋଇଥିଲେ । ମୋର ନନାଙ୍କର ଦତ୍ତମାତାଙ୍କର ନାମ ଥିଲା କମଳା ଦେବୀ, କମଳା ଦେବୀଙ୍କର ପିତାଙ୍କ ନାମ ଗଙ୍ଗାଧର ଦାଶ, ସେ କବିସୂର୍ଯ୍ୟନଗର ପାଖରେ ଥିବା ସିବୁଳିଆ ଗ୍ରାମର ଝିଅ ଥିଲେ । ନନାଙ୍କର ମାମୁଁ ଘର କୋଠାରସିଙ୍ଗ । ତାଙ୍କର ମାମୁଁ କୋଠାରସିଙ୍ଗିରୁ ଯାଇ ବେନ୍ଧାଳିଆ ଗ୍ରାମରେ ବସବାସ କରିଥିଲେ ।

ମୋ ନନାଙ୍କ ନନା ବିନାୟକ ପଣ୍ଡା ପରିଣତ ବୟସରେ ୧୯୧୪ ଖ୍ରୀଷ୍ଟାବ୍ଦରେ ସନ୍ୟାସ ଦୀକ୍ଷା ଗ୍ରହଣ କରିଥିଲେ। ବୈଷ୍ଣବ ହେଲା ପରେ ତାଙ୍କର ନାମ ବୈଷ୍ଣବ ଚରଣ ଦାସ ହୋଇଥିଲା । ଗୌର ଗୋବିନ୍ଦ ଦାସ ତାଙ୍କର ଦୀକ୍ଷା ଗୁରୁଥିଲେ । ତାଙ୍କର ଗୁରୁ ହୁଣ୍ଡତ ଗ୍ରାମର ବାସିନ୍ଦା । ବିନାୟକ ପଣ୍ଡାଙ୍କ ମୃତ୍ୟୁ ଗୋମତୀ ନଦୀ ତଟରେ ୧୯୨୨ ଖ୍ରୀଷ୍ଟାବ୍ଦରେ ହୋଇଥିଲା । ଦେହତ୍ୟାଗ କଲା ବେଳକୁ ତାଙ୍କୁ ୭୫ କି ୭୬ ବର୍ଷ ବୟସ ହୋଇଥିଲା । ଟେଲିଗ୍ରାମ ପାଇ ନନା ଗଲା ବେଳକୁ ସେଠାରେ ସନ୍ୟାସୀମାନେ ତାଙ୍କର ସଂସ୍କାର କରି ସାରିଥିଲେ । ୧୮୭୪ ଖ୍ରୀଷ୍ଟାବ୍ଦରେ ତାଙ୍କର ଜନ୍ମ ହେବା ସମ୍ଭାବନା ।

ବୈଷ୍ଣବ ବିନାୟକ ପଣ୍ଡାଙ୍କ ବିଷୟରେ ମୁଁ ନନାଙ୍କ ଠାରୁ ଅନେକ କଥା ଶୁଣିଛି । ସେ ଜଣେ ଜ୍ଞାନୀ, ସାଧକ ଓ ନିର୍ଭୀକ ବ୍ୟକ୍ତିଥିଲେ । ଅନ୍ଧାର ରାତିରେ ଏକଲା ଜଙ୍ଗଲ ରାସ୍ତା ପାର ହୋଇ ବିଭିନ୍ନ ଗ୍ରାମକୁ ଯିବା ତାଙ୍କର ଅଭ୍ୟାସ ଥିଲା । ସେ ଚାଲିଲା ବେଳେ ସର୍ବଦା ଉଚ୍ଚ ସ୍ୱରରେ "ରାଧେ ଶ୍ୟାମ" ବାରମ୍ବାର କହୁଥିଲେ । ସେ ପହଞ୍ଚିବାର ଏହା ଏକ ସଙ୍କେତ ଥିଲା । ସେ କୌଣସି ଠାରେ କେବେ ହେଲେ କୌଣସି ହିଂସ୍ର ଜନ୍ତୁ ଦେଖି ନାହାଁନ୍ତି କିମ୍ବା ଭୂତ ପ୍ରେତ ଅନୁଭବ କରିନାହାଁନ୍ତି । ରାତିରେ ଗ୍ରାମ ନିକଟସ୍ଥ ଗୋଟିଏ ପାହାଡ଼ ଗୁମ୍ଫାରେ ଗୋଟିଏ ଦିପାଳୀ ଲଗାଇ ସେ ମନ୍ତ୍ର ପାଠ ଓ ସାଧନା କରୁଥିଲେ । ତାଙ୍କୁ ତନ୍ତ୍ର ବିଦ୍ୟା ଜଣାଥିଲା । ସେତେବେଳେ ବସନ୍ତ କିମ୍ବା ଝାଡ଼ାବାନ୍ତି ହେଲେ ଲୋକେ ସାଧକଙ୍କ ସାହାଯ୍ୟ ନେଉଥିଲେ । ଏହି ରୋଗରେ ପୀଡ଼ିତ ଅନେକ ରୋଗୀଙ୍କୁ ସେ ଭଲ କରିଥିବାରୁ ସୁନାମ ଅର୍ଜନ କରିଥିଲେ ।

ସେ ଚାଲି ଚାଲି ଚାରିଧାମ ତୀର୍ଥଯାତ୍ରା କରିଥିଲେ । ସେତେବେଳେ ଅନେକ ତୀର୍ଥ ସ୍ଥାନକୁ ଯାନବାହାନ ନଥିଲା । ଯେଉଁଠି କିଛି ଯାନବାହାନ ନ ଥିଲା ସେ ଚାଲି ଚାଲିଯାଇଥିଲେ । କେତେକଙ୍କର ବିଶ୍ୱାସ ଅଛି ଯେ ପରିବାରର କୌଣସି ବ୍ୟକ୍ତି ସନ୍ୟାସ ଦୀକ୍ଷା ଗ୍ରହଣ କଲେ ତାଙ୍କର ପରବର୍ତ୍ତୀ ବ୍ୟକ୍ତିଙ୍କଠାରେ ତାର ଆଧାତ୍ମିକ ପ୍ରଭାବ ପଡ଼ିଥାଏ । ବୋଧ ହୁଏ ତାଙ୍କର ଆଶୀର୍ବାଦ ଫଳରେ ଆମର ପରିବାରର ନିଶ୍ଚୟ କିଛି ଉନ୍ନତି ହୋଇଥାଇପାରେ । କୁକୁଡ଼ାଖଣ୍ଡି ଏବଂ ଆଖପାଖ କେତେ ଖଣ୍ଡ ଗ୍ରାମରେ ସେ "ଆଜ୍ଞା" ଭାବେ ପରିଚିତ ଥିଲେ । ତାଙ୍କ ପରେ ମଧ ଆଜ୍ଞାଙ୍କ ଘର ବୋଲି ଆମର ପରିବାର ପରିଚିତ ।

## କୁକୁଡ଼ାଖଣ୍ଡିର ପଣ୍ଡାବଂଶ

ମହୁରୀ ରାଜା ବିକ୍ରମ କେଶରୀଙ୍କ ଦ୍ୱାରା କୁକୁଡ଼ାଖଣ୍ଡି ଗ୍ରାମରେ ପଣ୍ଡାବଂଶ ବସତିସ୍ଥାପନ କରିଥିଲେ । ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ଜଗନ୍ନାଥ ମହାପ୍ରଭୁଙ୍କର ପୂଜା ଉପାସନା କରିବା ପାଇଁ କବିସୂର୍ଯ୍ୟ ନଗର ନିକଟସ୍ଥ ଗୁଡ଼ିଆଳି ଗ୍ରାମରୁ ଏମାନେ ଆସିଥିଲେ । ପ୍ରଥମେ ନାରାୟର ପଣ୍ଡା ନାମକ ଜଣେ ବ୍ୟକ୍ତି ଆସିଥିଲେ । ପଣ୍ଡା ବଂଶର ବର୍ତ୍ତମାନ ପର୍ଯ୍ୟନ୍ତ ଦାୟାଦମାନଙ୍କର ଏକ ବଂଶ ପରିଚୟ ପରିଶିଷ୍ଟ ୧ ରେ ଦିଆଯାଇଛି ।

କୁକୁଡ଼ାଖଣ୍ଡି ପଣ୍ଡାବଂଶର ଗୋତ୍ର ହେଉଛି ଭରଦ୍ୱାଜ ଏବଂ ପ୍ରବର ଆଙ୍ଗିରସ, ବାର୍ହସ୍ପତ୍ୟ ଓ ଭାରଦ୍ୱାଜ । ବେଦ ହେଉଛି ଯଜୁର୍ବେଦ । ଇଷ୍ଟଦେବୀ ହେଉଛନ୍ତି ରାମଚଣ୍ଡୀ । ରାମଚଣ୍ଡି ପୀଠ ଅତି ପ୍ରାଚୀନ । ଶ୍ରୀ ରାମଙ୍କ ବନବାସ ସମୟରେ ଏହା ପ୍ରତିଷ୍ଠିତ ହେବାର ସମ୍ଭାବନା ବୋଲି ପ୍ରବାଦ ଅଛି । ଏଠାରେ ମହାକାଳୀ, ମହାଲକ୍ଷ୍ମୀ, ମହା ସରସ୍ୱତୀଙ୍କ ଏକତ୍ର ସମାବେଶ ହୋଇଛି । ଛତ୍ରପୁର ଠାରୁ ପ୍ରାୟ ଆଠ କିଲୋମିଟର ଦୂରରେ ବିରିପୁର ପାହାଡ଼ ଉପରେ ରାମଚଣ୍ଡୀଙ୍କର ମନ୍ଦିର ଅଛି । ପାହାଡ଼ ତଳେ ଥିବା ଗ୍ରାମ ହେଉଛି ରାଜପୁର ।

ପଣ୍ଡା ସଂଜ୍ଞାର ଅର୍ଥ ହେଉଛି - "ପଣ୍ଡା ଶାସ୍ତ୍ରୋଜ୍ଜ୍ୱଳା ବୁଦ୍ଧିଃ"। ଅର୍ଥାତ୍ ଶାସ୍ତ୍ରାଧ୍ୟୟନରେ ନିର୍ମଳ ବୁଦ୍ଧିର ନାମ ପଣ୍ଡା । (ପଣ୍ଡିତ ସର୍ବସ୍ୱ, ପୃଷ୍ଠା, ୩, ତୃତୀୟ ସଂସ୍କରଣ, ୧୯୩୬) ।

## କୁକୁଡ଼ାଖଣ୍ଡି ଗ୍ରାମ

କୁକୁଡ଼ାଖଣ୍ଡି ଗ୍ରାମର ନାମକରଣ ମହୁରୀ ରାଜାଙ୍କ ଦ୍ୱାରା ଦିଆଯାଇଥିଲା । ଏହାର ଗୋଟିଏ କିମ୍ବଦନ୍ତୀ ଅଛି । ରାଜା ଶିକାର କରିବା ସମୟରେ ଭୋର ହେବାରୁ କୁକୁଡ଼ା ବୋବେଇବା ଏଠି ଶୁଣିଥିଲେ । ତେଣୁ ଗ୍ରାମର ନାମ କୁକୁଡ଼ାଖଣ୍ଡି ରଖିଥିଲେ ।

ଅନ୍ୟଏକ କିମ୍ବଦନ୍ତୀ ଅନୁସାରେ ଏଠାରେ କୁକୁଡ଼ା ଲଢ଼େଇ ହେଉଥିଲା । ଦୁଇଟି ଗଞ୍ଜା କୁକୁଡ଼ାର ଗୋଡ଼ରେ ଛୋଟ ଖୁର ବାନ୍ଧି ଲଢ଼େଇ ପାଇଁ ଛାଡ଼ି ଦିଆଯାଏ । କୁକୁଡ଼ାମାନେ କ୍ଷତବିକ୍ଷତ ହୁଅନ୍ତି । ଏହା ଲୋକଙ୍କ ପକ୍ଷେ ଖେଳ କିନ୍ତୁ କୁକୁଡ଼ାଙ୍କ ପକ୍ଷରେ କାଳ ହୁଏ । ଏହି ଘଟଣା ଉପରେ ଆଧାର କରି ଏ ଗ୍ରାମ ନାମ କୁକୁଡ଼ାଖଣ୍ଡି ହୋଇଥାଇପାରେ ।

କୁକୁଡ଼ାଖଣ୍ଡି ଗୋଟିଏ ବଡ଼ ଗ୍ରାମ । ବର୍ତ୍ତମାନ ଏହାର ଜନସଂଖ୍ୟା ପ୍ରାୟ ଦଶ ହଜାର ଏବଂ ବାସଗୃହ ସଂଖ୍ୟା ପ୍ରାୟ ଦୁଇ ହଜାର । ବ୍ରହ୍ମପୁର ସହର ଠାରୁ ଏହା ଦଶ କିଲୋମିଟର ଦୂରରେ ଅଛି । ବ୍ରହ୍ମପୁରରୁ ଆସିକା ଯିବା ରାସ୍ତାରେ ଠିକ୍ ରାସ୍ତା କଡ଼ରେ ଏହି ଗ୍ରାମଟି ଅବସ୍ଥିତ ।ଆଜିକାଲି ସହରର ପ୍ରାୟ ସମସ୍ତ ସୁବିଧା ଏହି ଗ୍ରାମରେ ମିଳିଲାଣି । ମୁଁ ପଢିଲା ବେଳେ ଗୋଟିଏ ମାତ୍ର ବୋର୍ଡ଼ସ୍କୁଲ ଛଡ଼ା ଆଉକିଛି ନ ଥିଲା । ବର୍ତ୍ତମାନ ହାଇସ୍କୁଲ, କଲେଜ, ଡ଼ାକ୍ତରଖାନା, ବ୍ଲକ୍ ଅଫିସ୍, ବ୍ୟାଙ୍କ୍ ଇତ୍ୟାଦି ଅନେକ ଅଫିସ ହେଲାଣି । କୁକୁଡ଼ାଖଣ୍ଡି ବ୍ଲକରେ ୧୨୦ଟି ଗ୍ରାମପଞ୍ଚାୟତ ଏବଂ ୨୦ଟି ପଞ୍ଚାୟତ ଅନ୍ତର୍ଭୁକ୍ତ ।

ଏହିଗ୍ରାମରେ ପାଞ୍ଚଟି ମନ୍ଦିର ଅଛି । ସବୁଠାରୁ ପୁରାତନ ଜଗନ୍ନାଥ ଓ ମହାଦେବ ମନ୍ଦିର ମହୁରୀ ରାଜା ପ୍ରତିଷ୍ଠା କରିଥିଲେ । ପରେ ଠାକୁରାଣୀ ମନ୍ଦିର, ରଘୁନାଥ ମନ୍ଦିର ଓ ରାଧାକୃଷ୍ଣ ମନ୍ଦିର ହୋଇଛି । ଗ୍ରାମର ଚତୁର୍ଦ୍ଦିଗରେ ପାଞ୍ଚଟି ବଡ଼ ବଡ଼ ପୋଖରୀ ଅଛି ।

ଗ୍ରାମରେ ସବୁ ଜାତିର ଲୋକେ ବସବାସ କରୁଛନ୍ତି । ଅଧିକାଂଶ ଅଧିବାସୀ ତେଲୁଗୁ ଭାଷୀ । ଏମାନେ ବେଲେମା, ପାଟସାଲିଆ ଓ କାଚରା ଶ୍ରେଣୀର । ବେଲେମାମାନେ ଚାଷକାମ, ପାଟସାଲିଆମାନେ ଲୁଗାବୁଣା ଏବଂ କାଚରାମାନେ ଚୁଡ଼ି କାରବାର କରନ୍ତି । ଅନ୍ୟାନ୍ୟ ଜାତି ମଧ୍ୟରେ ବ୍ରାହ୍ମଣ, କରଣ, ଦଳୁଆ, ଗଉଡ଼, ଧୋବା, ଭଣ୍ଡାରୀ, ଦଣ୍ଡାସି, ବାଉରି, ହାଡ଼ି ଅଛନ୍ତି ।

ଗ୍ରାମର ସବୁଜାତି ମଧ୍ୟରେ ସଦ୍‌ଭାବ ଅଛି । କେବେହେଲେ ଜାତିଗତ ହିଂସା କିମ୍ବା ଭେଦଭାବ ଦେଖାଯାଇ ନାହିଁ ।

ଏହି ଗ୍ରାମରେ ଏବଂ ଆଖ ପାଖ କୋଡ଼ିଏଟି ଗ୍ରାମରେ ମୋର ନନାଙ୍କର ଜୀବନର ସମସ୍ତ କାର୍ଯ୍ୟକଳାପ ସୀମାବଦ୍ଧ ଥିଲା । ସେ ଏହି ଗ୍ରାମର ଶିକ୍ଷକ, ଜଗନ୍ନାଥ ମନ୍ଦିରର ପୂଜାରୀ,ଆୟୁର୍ବେଦ ଚିକିତ୍ସକ ଓ ପୁରୋହିତ ଥିଲେ । ହିନ୍ଦୁ ସଂସ୍କୃତି ଓ ପରମ୍ପରା ଅନୁସାରେ ସେ, ଲୋକଙ୍କର ବିବାହ, ଶ୍ରାଦ୍ଧ, ପୂଜା ଓ ପୁଣ୍ୟପର୍ବ ପାଳନ ଆଦି ସମସ୍ତ କର୍ମ କର୍ମାଣୀ କାର୍ଯ୍ୟ ସଂପାଦନ କରୁଥିଲେ । ସେ କିଛି ସମୟ ଗ୍ରାମ୍ୟ ପୋଷ୍ଟମାଷ୍ଟର ଏବଂ ବ୍ରହ୍ମପୁର କୋପରେଟିଭ୍ ବ୍ୟାଙ୍କ୍‌ର ଏଜେଣ୍ଟ କାର୍ଯ୍ୟ ମଧ୍ୟ କରିଥିଲେ, ଏପରି ବହୁମୁଖୀ କାର୍ଯ୍ୟକଳାପରେ ସେ ନିୟୋଜିତ ଥିଲେ ।

# ଶିକ୍ଷକତା

ପ୍ରଥମେ ବିନାୟକ ପଣ୍ଡା କୁକୁଡ଼ାଖଣ୍ଡିର ଏକମାତ୍ର ଶିକ୍ଷକ ଥିଲେ । ଏହି ସ୍କୁଲକୁ "ଆଞ୍ଚା" ସ୍କୁଲ ବୋଲି କୁହାଯାଉ ଥିଲା । ନାନାଙ୍କ ସମୟରେ ଗୋଟିଏ ନିମ୍ନ ପ୍ରାଇମେରୀ ସ୍କୁଲ ଏବଂ ଗୋଟିଏ ମଧ ପ୍ରାଇମେରୀ ବୋର୍ଡ଼ ସ୍କୁଲ ଥିଲା । ନନା ନିମ୍ନ ପ୍ରାଇମେରୀ ସ୍କୁଲର ଶିକ୍ଷକ ଥିଲେ । ସ୍କୁଲକୁ ସରକାର ତରଫରୁ ବାର୍ଷିକ ଗ୍ରାଣ୍ଟ ମିଳୁଥିଲା ।

ନନା ପଞ୍ଚମ ଶ୍ରେଣୀ ପାସ୍ କଲା ପରେ ବ୍ରହ୍ମପୁରରେ ନର୍ମାଲ୍ ଟ୍ରେନିଙ୍ଗ ସ୍କୁଲରୁ ଶିକ୍ଷକ ତାଲିମ ନେଇ କୁକୁଡ଼ାଖଣ୍ଡିରେ ଶିକ୍ଷକତା କରିଥିଲେ । ସେତେବେଳେ ଗ୍ରାମରେ ଅଶିକ୍ଷିତଙ୍କ ସଂଖ୍ୟା ବେଶିଥିଲା । ସେତେବେଳେ କୌଣସି ପିଲା ପାଠ ପଢିବାକୁ ହେଲେ "ଆଞ୍ଚା" ସ୍କୁଲରୁ ହିଁ ବିଦ୍ୟାରମ୍ଭ କରୁଥିଲେ । ନନା ଦୀର୍ଘକାଳ ଏହି ସ୍କୁଲର ଶିକ୍ଷକ ଥିଲେ । ତାଙ୍କର ଶିକ୍ଷାଦାନ ପ୍ରଣାଳୀ ପ୍ରଶଂସନୀୟ ଥିଲା । ସେ କଡ଼ା ଶିକ୍ଷକ ଥବା ହେତୁ ବିଦ୍ୟାର୍ଥୀମାନେ ଭୟକରି ପାଠ ପଢ଼ାରେ ମନ ଦେଉଥିଲେ । ଶିକ୍ଷା ଦେବାରେ ସେ କୁଶଳ ଓ ଲୋକପ୍ରିୟ ଥିଲେ । ମୁଁ ମଧ ଏହି ସ୍କୁଲରୁ ବିଦ୍ୟାରମ୍ଭ କରିଥିଲି ।

ସ୍କୁଲଟି ଗାଁ ମଝିରେ । ବର୍ତ୍ତମାନ ସୁଦ୍ଧା ଏହି ସ୍କୁଲ ଅଛି । ବର୍ତ୍ତମାନ ସୁଦ୍ଧା ଲୋକେ ଏହାକୁ ଆଞ୍ଚା ସ୍କୁଲ ବୋଲି କହୁଛନ୍ତି ।

ତାଙ୍କର ଶିକ୍ଷକତା ସମୟରେ ଯେଉଁ ଶିକ୍ଷା ପରିଦର୍ଶକମାନେ ଆସୁଥିଲେ ସମସ୍ତେ ଶିକ୍ଷାଦାନ ବ୍ୟବସ୍ଥାରେ ସନ୍ତୋଷ ପ୍ରକାଶ କରୁଥିଲେ । ଶିକ୍ଷା ପ୍ରଦାନ ପାଇଁ ତାଙ୍କର ନିଷ୍ଠା ଥିଲା । ସେ ଜଣେ ବିଦ୍ୟାନୁରାଗୀ ବ୍ୟକ୍ତିଥିଲେ । କୌଣସି ପିଲା ଭଲ ପାଠ ପଢ଼ିଲେ ସେ ସନ୍ତୋଷ ଲାଭ କରୁଥିଲେ ।

ସେ ତାଙ୍କର ସନ୍ତାନମାନଙ୍କୁ ଉଚ୍ଚଶିକ୍ଷା ଦେବାରେ ଦୃଢ଼ ସଂକଳ୍ପ ରଖିଥିଲେ । ଧନ ସଞ୍ଚୟ ଅପେକ୍ଷା ପିଲାଙ୍କୁ ମଣିଷ କରିବା ଦାୟିତ୍ୱ ପ୍ରଥମ ବୋଲି ସେ ଉପଲବ୍ଧି କରିଥିଲେ ।

# ଜଗନ୍ନାଥ ମନ୍ଦିର ପୂଜାରୀ

କୁକୁଡ଼ାଖଣ୍ଡି ଗ୍ରାମଟି ସେତେବେଳେ ମହୁରୀ ଜମିଦାରୀ ମଧରେ ଥିଲା । ଜମିଦାରମାନଙ୍କୁ ରାଜା କୁହାଯାଉଥିଲା । ମହୁରୀ ରାଜା କୁକୁଡ଼ାଖଣ୍ଡିରେ ଗୋଟିଏ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରି ପୂଜାରୀ କାମ କରିବା ପାଇଁ ଗୁଡ଼ିଆଳିରୁ ନାରାୟଣ ପଣ୍ଡାଙ୍କୁ ଆଣି କୁକୁଡ଼ାଖଣ୍ଡିରେ ରଖିଥିଲେ । ଜଗନ୍ନାଥଙ୍କ ପୂଜାଅର୍ଚନା ପାଇଁ କେତେ ଜମି ମଧ ଜଗନ୍ନାଥଙ୍କ ନାମରେ ଏବଂ ନାରୟଣ ପଣ୍ଡାଙ୍କ ତତ୍ତ୍ୱାବଧାନରେ ଦେଇଥିଲେ । ତାଙ୍କଠାରୁ କୁକୁଡ଼ାଖଣ୍ଡିର

ପଣ୍ଡା ପରିବାର ଆରମ୍ଭ ହୋଇଥିଲା । ବର୍ତ୍ତମାନ କୁକୁଡ଼ାଖଣ୍ଡିରେ ଥିବା ସମସ୍ତ ପଣ୍ଡା ପରିବାର ତାଙ୍କର ଦାୟାଦ ।

ନନାଙ୍କ ପୂଜାରୀ କାଳ ମଧ୍ୟରେ ସେ ଅନ୍ୟକେତେଜଣ ବ୍ୟକ୍ତିଙ୍କୁ କହି ଜଗନ୍ନାଥଙ୍କ ପାଇଁ କେତେକ ଭୂ-ସଂପତ୍ତି ସଂଗ୍ରହ କରିଥିଲେ । ପ୍ରଥମେ ମନ୍ଦିର ଗୋଟିଏ ଚାଳ ଘରେ ଥିଲା ।ପରେ ମନ୍ଦିର ତିଆର ହେଲା । ବିନାୟକ ପଣ୍ଡାଙ୍କ ଅମଳରେ ବର୍ତ୍ତମାନ ଥିବା ମନ୍ଦିରଟି ନିର୍ମାଣ ହୋଇ ପ୍ରତିଷ୍ଠା ହୋଇଥିଲା । ମନ୍ଦିରର ଅନ୍ୟାନ୍ୟ ଉନ୍ନତି ମଧ୍ୟ ହୋଇଥିଲା ।

ମନ୍ଦିରରେ ଜଗନ୍ନାଥଙ୍କ ଏକ ବିଶାଳ ମୂର୍ତ୍ତି ପୂଜା ପାଆନ୍ତି । ମୂର୍ତ୍ତିଟି ଅତ୍ୟନ୍ତ ସୁନ୍ଦର ଓ ମନୋମୁଗ୍ଧକର । ରଥଯାତ୍ରା ପହଣ୍ଡି ସମୟରେ ସେନାପଟା ବନ୍ଧା ହୋଇଥିବା ମୂର୍ତ୍ତିଙ୍କୁ ଚାରିଜଣ ବଳିଷ୍ଠ ବ୍ୟକ୍ତି ନହେଲେ ଉଠାଇ ନେବା ଓ ପହଣ୍ଡି କରିବା ସହଜ ନୁହେଁ ।

ମନ୍ଦିରର ଅନ୍ୟାନ୍ୟ ଭାଗୁଆଳି ପୂଜାରୀ ମଧ୍ୟ ଅଛନ୍ତି । ପାଳି ଅନୁସାରେ ମନ୍ଦିରର ନୀତି କରନ୍ତି । ସବୁ ପୂଜାରୀଙ୍କ ମଧ୍ୟରେ ନନାଙ୍କର ସ୍ଥାନ ଉଲ୍ଲେଖନୀୟ । ତାଙ୍କର ତତ୍ତ୍ୱାବଧାନରେ ହିଁ ମନ୍ଦିରର ସମସ୍ତକାର୍ଯ୍ୟ ହେଉଥିଲା ।

ପ୍ରତିବର୍ଷ ରଥଯାତ୍ରା ହୁଏ । ରଥଯାତ୍ରା ସମୟରେ ସବୁ ପୂଜାରୀ ମିଶି କାର୍ଯ୍ୟ ସଂପାଦନ କରନ୍ତି । ଠାକୁର ରଥରେ ବସି ଗୁଣ୍ଡିଚା ଘରକୁ ଯାଆନ୍ତି । ଠାକୁର ମନ୍ଦିରକୁ ଫେରିବା ପର୍ଯ୍ୟନ୍ତ ଗୁଣ୍ଡିଚା ଘରେ ବିଭିନ୍ନ ବେଶ ହୁଅନ୍ତି । ରଥଯାତ୍ରା ଗ୍ରାମବାସୀ ଏବଂ ପାଖରେ ଥିବା ଅନ୍ୟାନ୍ୟ ଗ୍ରାମବାସୀ ମଧ୍ୟ ଉପଭୋଗ କରନ୍ତି ।

ଜଗନ୍ନାଥଙ୍କ ରଥ ଯେଉଁ ରାସ୍ତାରେ ପ୍ରଥମେ ନିଆଯାଉଥିଲା ତାହା ଅନିର୍ମଳ ଥିବା ହେତୁ ନନା ୧୯୫୦ ଖ୍ରୀଷ୍ଟାବ୍ଦରେ ତାହା ପରିବର୍ତ୍ତନ କରି ରଥ ବ୍ରାହ୍ମଣ ସାହି ଦେଇ ଯିବା ଆରମ୍ଭ କରିଥିଲେ । ବର୍ତ୍ତମାନ ସୁଦ୍ଧା ଏହି ରାସ୍ତାରେ ରଥ ନିଆ ହେଉଛି । ଏଥି ସକାଶେ ନାନା ପ୍ରତିବାଦ ଓ ସମାଲୋଚନା ହେଲେ ସୁଦ୍ଧା ସେ ତାଙ୍କ ମତରେ ଅଟଳ ଥିଲେ ।

ଜଗନ୍ନାଥଙ୍କ ସେବା ପୂଜାରେ ନନାଙ୍କର ଆନ୍ତରିକତା ଥିଲା । ଜଗନ୍ନାଥ ତାଙ୍କୁ ସ୍ୱପ୍ନରେ ଅନେକ ନିର୍ଦ୍ଦେଶ ଦେବା କଥା ସେ କହନ୍ତି । ଜଗନ୍ନାଥଙ୍କ ସେବାରେ ସେ ଉପକୃତ ହେବା କଥା ମାନନ୍ତି । ଜଗନ୍ନାଥଙ୍କ ମସ୍ତକରେ ଲକ୍ଷେ ସୁବାସିତ ତୁଳସୀ ମଞ୍ଜରି ଅର୍ପଣ କରି ସେ ବାଞ୍ଛିତ ଫଳ ଲାଭ କରିଥିବା କଥା କହନ୍ତି ।

ସେ କେବେ ଭୁବନେଶ୍ୱର ମୋର ବସାକୁ ଆସିଲେ ଫେରିଲା ବେଳେ ଜଗନ୍ନାଥଙ୍କ ପାଇଁ ଲଡୁ ନେଇ ଭୋଗ କରନ୍ତି । ବିଦେଶ ଗଲେ ଜଣେ ଯେପରି ନିଜର ପରିବାର ପାଇଁ କିଛି ନିଅନ୍ତି ସେହିପରି ସେ ନେଉଥିଲେ । ମନ୍ଦିରରେ ରୋଷେଇ କରି ଜଗନ୍ନାଥଙ୍କ ଠାରେ ଯେଉଁ ଅନ୍ନ ଓ ବ୍ୟଞ୍ଜନ ଭୋଗ କରନ୍ତି ତା'ର ବାସନା ଓ ରୁଚିରେ ବିଶିଷ୍ଟତା ଥାଏ ।

ଥରେ ଜଗନ୍ନାଥଙ୍କ ଅଣସର ସମୟରେ ଜଗନ୍ନାଥଙ୍କ ଠାରେ ଔଷଧି ଲଗାଯିବା ସମୟରେ ଜଗନ୍ନାଥଙ୍କ ବାହୁ ଦୁଇଟି ହଲିବାରୁ ଜଗନ୍ନାଥଙ୍କ ନିର୍ଦ୍ଦେଶ ପ୍ରକାରେ ବିନ୍ଧାଣୀ ଡ଼ାକି ଆଣି ତାହା ଠିକ୍ କରିଥିଲେ । ଆଜି ପର୍ଯ୍ୟନ୍ତ ତାହା ଠିକ୍ ଅଛି ।

ତାଙ୍କର ବୃଦ୍ଧା ବସ୍ଥା ସମୟରେ ଚଳପ୍ରଚଳରେ ଅସୁବିଧା ହେବାରୁ ସେ ଜୀବନର ଶେଷ ପ୍ରାୟ ପାଞ୍ଚ ବର୍ଷ ମୋ ପାଖରେ ଭୁବନେଶ୍ୱରରେ କଟାଇଥିଲେ । ତାଙ୍କର ଖଟ ସାମନାରେ ଜଗନ୍ନାଥଙ୍କ ଫଟୋ ଟଙ୍ଗା ହୋଇଥାଏ । ବେଳେବେଳେ ଫଟୋକୁ ଦେଖି ଅଭିମାନ କରି ସେ ପ୍ରଶ୍ନ କରନ୍ତି ଏହା କ'ଣ ତାଙ୍କର ଜୀବନ ସାରା ସେବାର ଫଳ ? ଜଗନ୍ନାଥ ଯେ କାହାକୁ କ'ଣ ଭୋଗ କରିବାକୁ ଦିଅନ୍ତି ସେ କଥା ସେ ଜାଣନ୍ତି । ତାହା ସମାଲୋଚନା କରିବା ମଣିଷର ବିଚାର ଧାରାର ବାହାରେ । ସେ କେବେ ଜଗନ୍ନାଥଙ୍କ ଭରସା ତ୍ୟାଗ କରି ନ ଥିଲେ । ଜୀବନରେ ସେ ଯାହା କିଛି ସଫଳତା ଲାଭ କରିଥିଲେ ସବୁ ତାଙ୍କର ଆଶୀର୍ବାଦର ଫଳ ବୋଲି ସେ କହୁଥିଲେ ।

# ଆୟୁର୍ବେଦ ଚିକିତ୍ସକ

ନିଜ ଅଧ୍ୟବସାୟ ବଳରେ ଆୟୁର୍ବେଦ ଶାସ୍ତ୍ର ପଢ଼ାପଢ଼ି କରି ନନା ଆୟୁର୍ବେଦ ଚିକିତ୍ସା କରୁଥିଲେ । ବଣ ଜଙ୍ଗଲ ବୁଲି ଔଷଧ ଗଛର ମୂଳ, ଡ଼ାଳ, ଛାଲି, ଫଳ ଆଦି ସଂଗ୍ରହ କରି ଟୋକେଇରେ ସାଇତି ରଖୁଥିଲେ । ନିଜେ ଆୟୁର୍ବେଦ ଔଷଧ ପ୍ରସ୍ତୁତ କରୁଥିଲେ ।

ସେତେବେଳେ ଏଲୋପାଥିକ ଚିକିତ୍ସା ବହୁଳ ଭାବେ ପ୍ରଚଳନ ନଥିଲା । ଗାଁରେ ଗୋଟିଏ ମାତ୍ର ଛୋଟିଆ ଡାକ୍ତରଖାନା ଥିଲା । ସେଠାରେ ମଧ୍ୟ ସବୁ ଔଷଧ ମିଳିବା ସମ୍ଭବ ନଥିଲା । ଲୋକେ ବ୍ରହ୍ମପୁର ଯାଇ ଡ଼ାକ୍ତରଙ୍କୁ ଦେଖାଇବା ଖର୍ଚ୍ଚାନ୍ତ ମଧ୍ୟ ଥିଲା । ତେଣୁ ଅନେକ ଲୋକ ନନାଙ୍କ ଆୟୁର୍ବେଦ ଚିକିତ୍ସାର ଆଶ୍ରୟ ନେଉଥିଲେ ଏବଂ ଉପକୃତ ହେଉଥିଲେ ।

ଘରେ ପରିବାର ମଧ୍ୟରେ କାହାର କ'ଣ ବେମାରୀ ହେଲେ ସେ ଆୟୁର୍ବେଦ ଔଷଧ ବ୍ୟବହାର କରି ତାହା ଭଲ କରୁଥିଲେ । ମୋର ବୋଉ ଜଣେ ବାତ ରୋଗୀ ଥିଲା । ମାସ ମାସ ଧରି ସେ ଆଣ୍ଠୁ ଗଣ୍ଠି ଯନ୍ତ୍ରଣାରେ କଷ୍ଟ ଭୋଗ କରୁଥାଏ । ମୋର ମଧ୍ୟ ମାଟ୍ରିକ ପରିକ୍ଷା ପରେ କିଛି ଦିନ ବାତ ବେମାରୀ ହୋଇଥିଲା । ନନା ଆୟୁର୍ବେଦ ଔଷଧ ଦେଇ ମୋ ବୋଉର ଓ ମୋର ବେମାରୀ ଭଲ କରିଥିଲେ । ମଝିରେ ମଝିରେ ସେ ବ୍ରହ୍ମପୁର ଯାଇ ତାଙ୍କର ପରିଚିତ ଆୟୁର୍ବେଦ ଚିକିତ୍ସକଙ୍କ ପରାମର୍ଶ ମଧ୍ୟ ନେଉଥିଲେ ।

ତାଙ୍କର ଆୟୁର୍ବେଦ ଔଷଧ ଚିକିତ୍ସାରେ ଅନେକ ଗରିବ ଜନସାଧାରଣ ଉପକୃତ ହୋଇଥିଲେ ।

# ପୁରୋହିତ

କୁକୁଡ଼ାଖଣ୍ଡି ପଣ୍ଡା ବଂଶ ପ୍ରଥମ ବ୍ରାହ୍ମଣ ପରିବାର । ତେଣୁ ହିନ୍ଦୁ ପରମ୍ପରା ଓ ସଂସ୍କୃତି ଅନୁସାରେ ଲୋକଙ୍କର କର୍ମ କର୍ମାଣୀ କରିବାର ଦାୟିତ୍ୱ ପଣ୍ଡାବଂଶ ଦ୍ୱାରା ପରିଚାଳିତ ହେଉଥିଲା । କୁକୁଡ଼ାଖଣ୍ଡି ଏବଂ ନିକଟସ୍ଥ ଅନ୍ୟାନ୍ୟ ଚାରି ପାଞ୍ଚ ଖଣ୍ଡ ଗ୍ରାମର ଲୋକଙ୍କର ବିବାହ, ଶ୍ରାଦ୍ଧ, ଗୃହପ୍ରବେଶ, ଗୃହପ୍ରତିଷ୍ଠା, ବିଦ୍ୟାରମ୍ଭ ଏବଂ ଅନ୍ୟାନ୍ୟ ପର୍ବପର୍ବାଣୀ ପାଳନ କରିବାର ଦାୟିତ୍ୱ ପଣ୍ଡାବଂଶ ଦ୍ୱାରା ହେଉଥିଲା । ଏହି ସବୁ କାମକୁ ପୁରୋହିତ କାମ କୁହାଯାଏ ।

ଏହି କର୍ମ କର୍ମାଣୀ କାର୍ଯ୍ୟ କରିବା ପାଇଁ ସାଧାରଣ ଜ୍ୟୋତିଷ ଜ୍ଞାନ ନିତାନ୍ତ ଆବଶ୍ୟକ । ନନାଙ୍କର ଜ୍ୟୋତିଷ ଜ୍ଞାନ ମଧ୍ୟ ଥିଲା । ପାଞ୍ଜିର ନିର୍ଦ୍ଧାରିତ ଦିନ ଅନୁସାରେ ଏହି ସବୁକର୍ମ କର୍ମାଣୀ ହୋଇଥାଏ । ତେଣୁ ପାଞ୍ଜି ବିଷୟରେ ମଧ୍ୟ ଜ୍ଞାନ ଥିବା ଦରକାର । ପ୍ରତିବର୍ଷ ଦୋଳପୂର୍ଣ୍ଣିମା ଦିନ ଜଗନ୍ନାଥ ମନ୍ଦିରରେ ପାଞ୍ଜି ପାଠ ହୋଇଥାଏ । ନନା ଏହା କରନ୍ତି । ଲୋକେ ନିଜ ନିଜର ଆଗାମିବର୍ଷର ଆୟ ବ୍ୟୟ ପ୍ରତି ଆଗ୍ରହ ପ୍ରକାଶ କରନ୍ତି । ନାମ ରାଶି ଅନୁସାରେ ନନା ତାହା କହିଥାନ୍ତି । ଆଗାମି ବର୍ଷର ପାଣିପାଗ, ବର୍ଷା, ଫସଲ, ଦରଦାମ ପ୍ରଭୃତି ବିଷୟରେ ପାଞ୍ଜିରେ ଦର୍ଶା ଯାଇଥିବା ବିଷୟ ଆଲୋଚନା ହୁଏ ।

ବିଭିନ୍ନ କର୍ମ କାଣ୍ଡ ପୁସ୍ତକ ଅଧ୍ୟୟନ କରି ନନା କର୍ମ କର୍ମାଣୀ କରିବାର ଦକ୍ଷତା ଓ ସୁନାମ ଅର୍ଜନ କରିଥିଲେ । ନିଷ୍ଠାର ସହିତ ବିଧି ଅନୁସାରେ ସେ କର୍ମ କର୍ମାଣୀ ସଂପନ୍ନ କରୁଥିଲେ ।

ଜଣେ ଉତ୍ତମ ପୁରୋହିତ ଭାବରେ ତାଙ୍କର ଖ୍ୟାତି ଥିଲା । ତାଙ୍କର କଣ୍ଠ ମଧୁର ଓ ଶ୍ଳୋକ ଉଚ୍ଚାରଣ ସ୍ପଷ୍ଟ ଥିଲା । ତେଣୁ ତାଙ୍କ ପ୍ରତି ଲୋକଙ୍କର ଆଦର ଥିଲା ।

ଅବଶ୍ୟ ପୁରୋହିତ କାମ କରିବା ପାଇଁ ଅନେକ ଭାଗୁଆଳି ମଧ୍ୟ ଥିଲେ । ଭାଇମାନଙ୍କ ମଧ୍ୟରେ ଧନ ସଂପତ୍ତି ଯେପରି ବଣ୍ଟା ଯାଏ, କାଳକ୍ରମେ ଯଜମାନ ଘର ମଧ୍ୟ ସେପରି ପୁରୁଷାନୁକ୍ରମେ ବଣ୍ଟାଯାଇଥାଏ । ନନାଙ୍କର ଭାଗରେ ଯେଉଁ ଯଯମାନ ମାନେ ଥିଲେ ସେମାନେ ତାଙ୍କର ପୂଜା ପଦ୍ଧତିରେ ସନ୍ତୁଷ୍ଟ ଥିଲେ ।

ଆଜି ସୁଦ୍ଧା ମୋର ଭାଇମାନେ ଗାଁରେ ଆମର ଭାଗରେ ଥିବା ଯଯମାନ ମାନଙ୍କର ପୁରୋହିତ କାମ କରୁଛନ୍ତି । ଏହି ଦାୟିତ୍ୱ ବଂଶାନୁକ୍ରମେ ପ୍ରାପ୍ତି ହୋଇଥାଏ ।

# ପୋଷ୍ଟମାଷ୍ଟର

୧୯୦୨ ଖ୍ରୀଷ୍ଟାବ୍ଦରେ କୁକୁଡ଼ାଖଣ୍ଡିରେ ପୋଷ୍ଟ ଅଫିସ୍ ହେଲା । ପ୍ରଥମେ ବିନାୟକ ପଣ୍ଡା ପୋଷ୍ଟମାଷ୍ଟ୍ର ହେଲେ । ତାପରେ ନନା କିଛି ସମୟ ପୋଷ୍ଟ ମାଷ୍ଟ୍ର ହେଲେ । କିଛି ଦିନ ପରେ ତାଙ୍କର ବଡ଼ଭାଇ ଦୀନବନ୍ଧୁ ପଣ୍ଡା ପୋଷ୍ଟମାଷ୍ଟ୍ର ହେବାରୁ ସେ ସେଥିରୁ ଅଲଗା ହେଲେ । ପୋଷ୍ଟମାଷ୍ଟ୍ର କାମ ମଧ ନନା ସୁଚାରୁରୂପେ ଚଳାଇଥିଲେ ।

# ବ୍ୟାଙ୍କ୍ ଏଜେଣ୍ଟ

ବ୍ରହ୍ମପୁର କୋପରେଟିଭ୍ ବ୍ୟାଙ୍କ୍ ଗ୍ରାମର ଲୋକଙ୍କୁ ଋଣ ଦିଅନ୍ତି ଏବଂ କିସ୍ତି ଆଦାୟ କରନ୍ତି । ଏହି କାମ ପାଇଁ ବ୍ୟାଙ୍କ ଗ୍ରାମରେ ଏଜେଣ୍ଟ ନିଯୁକ୍ତ କରନ୍ତି । ଋଣ ଦିଆନିଆ କରିବା, କିସ୍ତି ଅନୁସାରେ ଋଣ ଆଦାୟ କରି ବ୍ରହ୍ମପୁର ବ୍ୟାଙ୍କରେ ଜମା ଦେବା ଏବଂ ଏଥି ସକାଶେ ଉପଯୁକ୍ତ ରେକର୍ଡ଼ ରଖିବା ଆଦି କାମ ମଧ ନନା କିଛି ଦିନ କରିଛନ୍ତି ।

# ପୁରାଣ ପାଠ

ଜଗନ୍ନାଥ ମନ୍ଦିରରେ ଗୋଟିଏ ଭାଗବତ ଗାଦି ଅଛି । ସେଠାରେ ମହାପୁରୁଷ ଜଗନ୍ନାଥ ଦାସଙ୍କ ତାଳପତ୍ର ଲିଖିତ ଭଗବତ ପୋଥି ଏବଂ ଆଧୁନିକ ଛାପା ଭଗବତ ପୁସ୍ତକ ପୂଜା ହେଉଛି । ଯେଉଁ ପୂଜାରୀଙ୍କ ପାଳି ପଡ଼େ ସେ ପ୍ରତିଦିନ ସନ୍ଧ୍ୟାରେ ଭାଗବତରୁ ଅନ୍ତତଃ ଗୋଟିଏ ଅଧ୍ୟାୟ ପାଠ କରନ୍ତି ଏବଂ ଲୋକେ ତାହା ଶୁଣନ୍ତି । କାର୍ତ୍ତିକ ମାସରେ ପୂର୍ଣ୍ଣମୀର ସାତ ଦିନ ପୂର୍ବରୁ ଭାଗବତ ପାରାୟଣ ଆରମ୍ଭ ହୋଇ ପୂର୍ଣ୍ଣମୀ ଦିନ ଶେଷ କରାଯାଏ । ଏହି ସାପ୍ତାହିକ ପୁରାଣ ନନା ପ୍ରତି ବର୍ଷ ଜଗନ୍ନାଥ ମନ୍ଦିରରେ ପଢୁଥିଲେ । ମନ୍ଦିରରେ ହବିଷ୍ୟ କରି ଗୋଟେ ଓଳି ପ୍ରସାଦ ସେବନ କରି ରହୁଥିଲେ । ପୁରାଣ ଶୁଣିବା ପାଇଁ ମଧ କେତେ ଲୋକ ହବିଷ୍ୟ କରି ରହନ୍ତି ।

ଜଗନ୍ନାଥ ମନ୍ଦିରରେ ଏବଂ ଗ୍ରାମରେ ଥିବା ବିଭିନ୍ନ ସାହିର ମଣ୍ଡପରେ ବେଳେବେଳେ ନନା ବିଭିନ୍ନ ପୁରାଣ ପାଠ କରୁଥିଲେ । ଗୋଟିଏ ପୁରାଣ ସରିଲେ ଆଉ ଗୋଟିଏ ଆରମ୍ଭ ହୁଏ । ନନାଙ୍କଠାରୁ ପୁରାଣ ଶୁଣିବା ପାଇଁ ଲୋକଙ୍କର ଆଗ୍ରହ ଥିଲା ଏବଂ ଅନେକ ଶ୍ରୋତା ହେଉଥିଲେ । ସାଧାରଣତଃ ରାତ୍ରିର ପ୍ରଥମ ପ୍ରହରରେ ପୁରାଣ ପାଠ ହୁଏ । ଆଜିକାଲି ପୁରାଣ ଶୁଣିବାର ଆଗ୍ରହ ଲୋକଙ୍କ ଠାରୁ ଲୋପ ପାଇଲାଣି ।

କାର୍ତ୍ତିକ, ମାର୍ଗଶୀର, ବୈଶାଖ ଓ ମାଘ ମାସରେ ସେହି ମାସର ପୁରାଣ ପାଠ ମଧ୍ୟ ହେଉଥିଲା । ସାଧାରଣତଃ ସ୍ତ୍ରୀ ଲୋକମାନେ ଯେଉଁମାନେ ଉପରୋକ୍ତ ମାସରେ ବ୍ରତ ପାଳନ କରିଥାନ୍ତି ସେମାନେ ପୁରାଣ ଶୁଣନ୍ତି । ନନା ଏହି ପୁରାଣ ପାଠ କରନ୍ତି । ଅଧିକାଂଶ ପୁରାଣ ବିଷୟରେ ନନାଙ୍କର ଧାରଣା ଥିଲା । ବେଳେ ବେଳେ ସେ ପୁରାଣର ଗଳ୍ପ କହନ୍ତି ।

ପୁରାଣ ହିନ୍ଦୁ ସଂସ୍କୃତିକୁ ଜୀବିତ ଓ ସଂବୃଦ୍ଧି କରି ରଖିଛି । ଆଜିକାଲି ଏହାର ଆଦର କମିଯିବାରୁ ସମାଜରେ ସଂସ୍କୃତିର ମଧ୍ୟ କ୍ଷୟ ହେଉଛି । କେତେକ ଆଧୁନିକ ଶିକ୍ଷିତ ବ୍ୟକ୍ତି ପୁରାଣକୁ ବିକୃତ କରି ସମାଲୋଚନା କରନ୍ତି । ଭକ୍ତି ନ ଥିଲେ ପୁରାଣ ବୁଝିବା ସହଜ ନୁହେଁ ।

## ମଉଚ୍ଛ

ନନାଙ୍କର ନନା ବିନାୟକ ପଣ୍ଡା ଓରଫ ବୈଷ୍ଣବ ଚରଣ ଦାସଙ୍କର ତିରୋଧାନ ଦିବସରେ ନନା ମହୋତ୍ସବ କରୁଥିଲେ । ସେହି ଦିନ କେତେଜଣ ସନ୍ୟାସୀଙ୍କୁ ନିମନ୍ତ୍ରଣ କରାଯାଉଥିଲା । ଜଗନ୍ନାଥ ମନ୍ଦିରରେ ସେମାନେ କିଛି ସମୟ ସଂକୀର୍ତ୍ତନ କରୁଥିଲେ । ଭୋଜନ ପରେ ଦକ୍ଷିଣା ପାଇ ବିଦାୟ ନେଉଥିଲେ ।

ବିନାୟକ ପଣ୍ଡାଙ୍କର ଚିତାଭସ୍ମ ଜଗନ୍ନାଥ ମନ୍ଦିର ବେଢ଼ାରେ ଗୋଟିଏ ସ୍ଥାନରେ ରଖାଯାଇ ଗୋଟିଏ ଛୋଟିଆ ପିଣ୍ଡି ତିୟାର ହୋଇଛି । ସେଠାରେ ନନା ସବୁବେଳେ ଜଳ ଓ ପୁଷ୍ପ ପ୍ରଦାନ କରୁଥିଲେ । ମୁଁ ମଧ୍ୟ ଜଗନ୍ନାଥ ମନ୍ଦିରରେ ପାଳି କରିବା ସମୟରେ ସେଠାରେ ଫୁଲ ଦେଉଥିଲି ।

## ବିଦ୍ୟାନୁରାଗୀ

କୁକୁଡ଼ାଖଣ୍ଡିରେ ସେତେବେଳେ ବୋର୍ଡ଼ସ୍କୁଲରେ ସପ୍ତମ ଶ୍ରେଣୀରୁ ଅଧିକ ନ ଥିଲା । ସପ୍ତମରୁ ହିଁ ବିଦ୍ୟାର୍ଥୀମାନେ ପାଠ ପଢ଼ା ଛାଡ଼ି ଦେଉଥିଲେ । ଗ୍ରାମରେ ଅନେକ ଧନୀ ଲୋକ ଥିଲେ ସୁଦ୍ଧା ସେମାନଙ୍କର ପିଲାଙ୍କୁ ବ୍ରହ୍ମପୁର ବା ଅନ୍ୟ କୌଣସି ସହରକୁ ପାଠ ପଢ଼ିବା ପାଇଁ ପଠାଉ ନ ଥିଲେ । ମୋ ନନା ଏଥିରେ ପ୍ରଥମ ପଥ ପ୍ରଦର୍ଶକ ଥିଲେ । ମୁଁ ସପ୍ତମ ଶ୍ରେଣୀ ପାସ୍ କରିବା ପରେ ପଢ଼ିବା ପାଇଁ ବ୍ରହ୍ମପୁର ଯାଇଥିଲି । ମୋ ପରେ ଆମ ଗାଁର ଅନ୍ୟ କେତେକ ବ୍ୟକ୍ତି ମଧ୍ୟ ତାଙ୍କ ପିଲାଙ୍କୁ ବ୍ରହ୍ମପୁର କିମ୍ବା ହିଞ୍ଜିଳିକାଟୁ ପଢ଼ିବା ପାଇଁ ପଠାଇଲେ । ମୋ ନନାଙ୍କର ପଦକ୍ଷେପ ଅନ୍ୟମାନଙ୍କୁ ପ୍ରେରଣା ଦେଇଥିଲା । ମୁଁ ବ୍ରହ୍ମପୁର ଯିବାର ଦୁଇବର୍ଷପରେ ମୋର ସାନ ଭାଇ ଏବଂ ତାପର ବର୍ଷ ମୋର ଅନ୍ୟ ଏକ ସାନ ଭାଇ ମଧ୍ୟ ବ୍ରହ୍ମପୁର ପଢ଼ିବାକୁ ଆସିଥିଲେ । ବ୍ରହ୍ମପୁରରେ ଗୋଟିଏ ଘର ଭଡ଼ା ନେଇ ଆମେ

ତିନିଭାଇ ରହି ପଢ଼ାପଢ଼ି କଲୁ । ଆମ ପାଇଁ ରାନ୍ଧି କରି ଦେବା ପାଇଁ ପ୍ରଥମେ ମୋର ଗୋସେଇଁ ମା ଏବଂ ପରେ ମୋର ଜଣେ ପିଉସୀ ବ୍ରହ୍ମପୁର ଆସି ବସାରେ ରହିଲେ । କିଛି ଦିନ ପରେ ଆମର ସଂପର୍କୀୟ କେତେଜଣ ମଧ୍ୟ ଆସି ଆମର ବସାରେ ରହି ପାଠ ପଢ଼ିଲେ ।

ସେ ସମୟରେ ସହରରେ ଘରଭଡ଼ା ନେଇ ଏକ ସମୟରେ ତିନୋଟି ପୁଅର ପଢ଼ାପଢ଼ି ବ୍ୟୟ ବହନ କରିବା ଜଣେ ମଧ୍ୟବିତ୍ତ ବ୍ୟକ୍ତି ପକ୍ଷରେ କମ୍ ସାହସର କାର୍ଯ୍ୟ ନ ଥିଲା । ନନାଙ୍କର ରୋଜଗାରରେ ଏହି ବ୍ୟୟ ବହନ କରିବା କଷ୍ଟକର ଥିଲା । ତଥାପି ଯେ କୌଣସି ଅଭାବ ଅସୁବିଧା ହେଲେ ସୁଦ୍ଧା ପିଲାଙ୍କୁ ଅଧିକ ପଢ଼ାଇ ମଣିଷ କରିବା ତାଙ୍କର ଦୃଢ଼ତା ଥିଲା । ସେ ଋଣ କରି ଏବଂ କିଛି ଭୂସଂପତ୍ତି ବିକ୍ରି କରି ପଢ଼ାପଢ଼ି ଖର୍ଚ୍ଚ ବହନ କରିଥିଲେ । ଗାଁର ଯେ କୌଣସି ବ୍ୟକ୍ତିଙ୍କୁ ଟଙ୍କା ମାଗିଲେ କେହି କେବେ ମନା କରନ୍ତି ନାହିଁ । ଟଙ୍କା ବୁଡ଼ିଯିବାର ଆଶଙ୍କା କାହାର ନଥିଲା । ପିଲାମାନେ ପାଠପଢ଼ା ସାରି ରୋଜଗାର କଲେ ଋଣ ଟଙ୍କା ସୁଝି ଦେଇ ହେବ ଏହି ବିଶ୍ୱାସ ତାଙ୍କର ଥିଲା । ଉଚ୍ଚ ଶିକ୍ଷା ଲାଭକରି ପିଲାମାନେ କିପରି ଉତ୍ତମ ରୋଜଗାର କରିବେ ଏହା ତାଙ୍କର ଇଛା ଥିଲା । ସେଥିପାଇଁ ସେ ଅକ୍ଲାନ୍ତ ପରିଶ୍ରମ କରିଥିଲେ । ପାଠପଢ଼ା ସାରି ଆମେ ସବୁ ରୋଜଗାର କଲାପରେ ନନା ଯାହା ଋଣ କରିଥିଲେ ତାହା ପରିଶୋଧ କରିଥିଲେ ।

## ଜାତକ

ଶିବନାରାୟଣ ପଣ୍ଡାଙ୍କର ଜନ୍ମ ଶକାବ୍ଦ ୧୮୧୮/୧୦/୧୦, ଇଂରାଜି ତା ୨୧.୧.୧୮୯୭ ମାଘ,କୃଷ୍ଣ, ତୃତୀୟା ଗୁରୁବାର ଦିନ ହୋଇଥିଲା । ଜାତକଟି ନିମ୍ନରେ ଦିଆଗଲା ।-




କୁମ୍ଭ ଲଗ୍ନ, ସିଂହ ରାଶି, ମଘା ନକ୍ଷତ୍ରରେ ଜନ୍ମ, ଜନ୍ମ ସମୟକୁ କେତୁ ମହାଦଶା ବ ୩.୧.୨୧ ଦିନ ବାକିଥିଲା ।

ଜାତକରେ ଶୁକ୍ର ଏକାକୀ ରାଜଯୋଗ କାରକ ଗ୍ରହ । ମଙ୍ଗଳ ଚତୁର୍ଥ ଭାବରେ ରହି କର୍ମ ଭାବକୁ ଦେଖୁଛନ୍ତି । କର୍ମ ଭାବରେ ଲଗ୍ନାଧିପତି ଶନି ଅଛନ୍ତି । ଶନି ଓ ମଙ୍ଗଳଙ୍କ ପରସ୍ପର

ଦୃଷ୍ଟି ରାଜଯୋଗ ସୃଷ୍ଟି କରୁଛି । ରବି ଓ ବୁଧ ଏକତ୍ର ରହି ବୁଧାଦିତ୍ୟ ଯୋଗ ସୃଷ୍ଟି କରୁଛନ୍ତି । ବୃହସ୍ପତି ଓ ଚନ୍ଦ୍ର ଏକତ୍ର ରହି ଗଜ କେଶରୀ ଯୋଗ ସୃଷ୍ଟି କରୁଛନ୍ତି । ଭାଗ୍ୟାଧିପତି ଶୁକ୍ର ଲଗ୍ନରେ ରହି ସପ୍ତମକୁ ଦେଖୁଛନ୍ତି । ଉପରୋକ୍ତ ଶୁଭ ଯୋଗ ଫଳରେ ସେ ଶିକ୍ଷିତ, ଖ୍ୟାତିବାନ୍ ଓ ଦୀର୍ଘାୟୁ ଥିଲେ । କର୍ମ କ୍ଷେତ୍ରରେ ସେ ସଫଳତା ଲାଭ କରିଥିଲେ ।

ସପ୍ତମ ଭାବରେ ଚନ୍ଦ୍ର ଓ ବୃହସ୍ପତି ଅଛନ୍ତି ଏବଂ ତାଙ୍କୁ ଭାଗ୍ୟାଧିପତି ଶୁକ୍ର ଦେଖୁଛନ୍ତି । ତେଣୁ ତାଙ୍କର ଦାମ୍ପତ୍ୟ ଜୀବନ ସୁଖମୟ ଥିଲା ।

ପଞ୍ଚମ ଭାବ ପାପକର୍ତ୍ତାରୀ ଯୋଗରେ ପୀଡ଼ିତ । ପଞ୍ଚମ ଭାବରୁ ଦ୍ୱାଦଶ ଭବ ହେଉଛି ଅଷ୍ଟମ, ଦ୍ୱାଦଶ ଭାବରେ ତିନୋଟି ପାପ ଗ୍ରହ ଅଛନ୍ତି । ତେଣୁ ତାଙ୍କର ପ୍ରଥମ ତିନୋଟି ସନ୍ତାନ ଶିଶୁ ଅବସ୍ଥାରେ ମୃତ୍ୟୁ ବରଣ କରିଥିଲେ । କିନ୍ତୁ ପୁତ୍ରକାରକ ବୃହସ୍ପତି ଜାତକରେ ବଳବାନ ହେତୁ ଏବଂ ଉଚିତ ପ୍ରତିକାର ଫଳରେ ସେ ତିନୋଟି ପୁତ୍ର ଏବଂ ଗୋଟିଏ କନ୍ୟାର ଜନକ ହୋଇଥିଲେ ।

ବୃହସ୍ପତି ଧନାଧିପତି ଏବଂ ଆୟାଧିପତି ହେତୁ ସେ ଉତ୍ତମ ରୋଜଗାର କ୍ଷମ ଥିଲେ ।

ଜାତକରେ ସିଂହରାଶି ଏବଂ ସେଠାରେ ବୃହସ୍ପତି ଅଛନ୍ତି । ରାଶି ବଳବାନ । ତେଣୁ ସେ ଦୃଢ଼ମନା, ସ୍ପଷ୍ଟବାଦୀ, ସ୍ୱାଭିମାନୀ, ଧୈର୍ଯ୍ୟଶୀଳ ଏବଂ ଜ୍ଞାନୀ ଥିଲେ ।

ଶନି ମହାଦଶା ବୁଧ ଅନ୍ତର ଦଶାରେ ତା ୨୪.୩.୧୯୮୨ ତାଙ୍କର ମୃତ୍ୟୁ ହୋଇଥିଲା ।ଶନି ଦ୍ୱାଦଶାଧିପତି ଏବଂ ବୁଧ ଅଷ୍ଟମାଧିପତି ଏବଂ ବୁଧକୁ ଶନିଙ୍କର ଦୃଷ୍ଟି ଅଛି । ଏହା ମୃତ୍ୟୁର ସୂଚନା ଦିଏ ।

# ସ୍ୱାସ୍ଥ୍ୟ

ତାଙ୍କର ଶରୀର ମୋଟା, ସବଳ,ସୁନ୍ଦର, ଗୌରବର୍ଣ୍ଣ ଏବଂ ଉଚ୍ଚତା ମଧ୍ୟମ ଧରଣର ଥିଲା । ସାଧାରଣତଃ ସେ ନିରୋଗୀ ଥିଲେ । ଅବଶ୍ୟ ବୃଦ୍ଧ ବୟସରେ ବାର୍ଦ୍ଧକ୍ୟ ଜନିତ କିଛି ରୋଗ ଆକ୍ରମଣ କରିଥିଲା ।

ଖାଦ୍ୟପେୟ ବିଷୟରେ ସେ ସଚେତନ ଥିଲେ । ସବୁବେଳେ ଘାଈଖିର ଖାଉଥିଲେ । ନିୟମ ଅନୁସାରେ ଖାଦ୍ୟ ଖାଉଥିଲେ ଏବଂ ଶୟନ କରୁଥିଲେ । ଖାଦ୍ୟପେୟରେ ନିୟମ ଓ ସମୟ ଜଗି ଚଳୁଥିଲେ ।

ଘରେ ବରାବର ଗୋଟିଏ ଦୁହାଁଳିଆ ଗାଈ ରଖୁଥିଲେ । ଗୋ ସେବାରେ ଯତ୍ନ ନେଉଥିଲେ । ସେ ଗୋ ଚିକିତ୍ସା ମଧ୍ୟ ଜାଣିଥିଲେ । ବୁଢ଼ି ଗାଈକୁ ହାଟରେ କଂସେଇକୁ ବିକୁ ନ ଥିଲେ । ଗାଈ ବୁଢ଼ି ହେଲେ ଗୁହାଳରେ ହିଁ ମରୁଥିଲା ।

# ମୋ ବୋଉର ଜାତକ

ମୋ ବୋଉ ରକ୍ମିଣୀ ଦେବୀର ବାପ ଘର ଆସିକା ପାଖରେ ହୁମୁକି । ହୁମୁକିର ସମ୍ଭ୍ରାନ୍ତ ପାଣିଗ୍ରାହୀ ପରିବାରରେ ତାର ଜନ୍ମ । ମୋର ମାମୁଁ ଘର ଯୌଥ ପରିବାରରେ ରହୁଥିଲେ । ମୋର ପାଞ୍ଚଜଣ ଅଜାଥିଲେ । କେତେ ଜଣ ମାମୁଁ ଥିଲେ ମତେ ଜଣା ନାହିଁ । ମୁଁ ମାମୁଁ ଘରକୁ ଗଲା ବେଳକୁ ମୋର ଜଣେ ଅଜା ଜୀବିତ ଥିବା ମୋର ମନେ ଅଛି । ଆମ ଗାଁକୁ ଦୁଇ ତିନି ଜଣ ମାମୁଁ ଆସନ୍ତି । ମୋର ଜଣେ ମାମୁଁ ଆଦିକନ୍ଦ ପାଣିଗ୍ରାହୀ, ସେ ବରାବର ଆମ ଗାଁକୁ ଆସନ୍ତି ଏବଂ ଆମେ ବ୍ରହ୍ମପୁରରେ ପଢ଼ିଲା ବେଳେ ଆମର ବସାକୁ ମଧ ଆସନ୍ତି । ମୋର ବୋଉର ନିଜ ଭାଇ ଭଉଣୀ କେହି ନଥିଲେ । ମୋର ବୋଉ ବାହାହୋଇ ଆସିଲା ପରେ ମୋର ଅଜା, ଆଇଙ୍କ ଦେହାନ୍ତ ହୋଇଥିଲା । ମୋର ଅଜାଘର ଗୋତ୍ର କାଶ୍ୟପ, ମୋର ଅଜାଙ୍କ ନାମ ପ୍ରହ୍ଲାଦ ପାଣିଗ୍ରାହୀ, ତାଙ୍କ ପିତା- ଗୋବିନ୍ଦ ପାଣିଗ୍ରାହୀ ଏବଂ ତାଙ୍କ ପିତା ସାରଥି ପାଣିଗ୍ରାହୀ ।

ବୋଉର ଜାତକ ନିମ୍ନରେ ଦିଆଗଲା-ଜନ୍ମ ଶକାବ୍ଦ ୧୮୨୫ /୧/୨୪ ଇଂରାଜି ତା ୬.୫.୧୯୦୩,ବୈଶାଖ,ଶୁକ୍ଳ, ଅଷ୍ଟମୀ, ବୁଧବାର ।




କୁମ୍ଭ ଲଗ୍ନ, ସିଂହ ରାଶି, ପୂର୍ବାଫାଲଗୁନୀ ନକ୍ଷତ୍ରରେ ଜନ୍ମ । ଜନ୍ମ ସମୟକୁ ଶୁକ୍ର ମହାଦଶା ବାକି ଥିଲା ବ ୨.୮.୨୩ ଦିନ ।

ଜାତକରେ ଲଗ୍ନରେ ବୃହସ୍ପତି ଏବଂ ସପ୍ତମରେ ଚନ୍ଦ୍ର । ଚନ୍ଦ୍ର ଓ ବୃହସ୍ପତି ପରସ୍ପର କେନ୍ଦ୍ରରେ ରହି ଦୃଷ୍ଟି ବିନିମୟ କରୁଛନ୍ତି । ଏହା ବଳବାନ ଗଜ କେଶରୀ ଯୋଗ ସୃଷ୍ଟି କରୁଛି । ଯୋଗକାରକ ଗ୍ରହ ଶୁକ୍ର ପଞ୍ଚମ ସ୍ଥାନରେ । ରବି ନିଜ ଉଚ୍ଚ ରାଶିରେ । ଚତୁର୍ଥାଧିପତି ଶୁକ୍ର ଓ

ପଞ୍ଚମାଧିପତି ବୁଧ ପରସ୍ପର ଗୃହ ପରିବର୍ତ୍ତନ କରି ବଳବାନ ରାଜଯୋଗ ସୃଷ୍ଟି କରୁଛନ୍ତି । ଜାତକଟି ଅତ୍ୟନ୍ତ ବଳବାନ ।

ନନା ଓ ବୋଉଙ୍କର ଜାତକ ମେଳକ ବିଚାର କଲେ ଏହା ଅତ୍ୟନ୍ତ ଶୁଭ ଦାୟକ ହେଉଛି । ମେଳକ ଶତକଡ଼ା ୯୧ ହେଉଛି । ଏପରି ଆଦର୍ଶ ଦମ୍ପତି ବିରଳ ।

ତଥାପି ବୋଉକୁ ମଧ୍ୟ ସନ୍ତାନ କଷ୍ଟ ଭୋଗିବାକୁ ପଡ଼ିଥିଲା । ତା'ର ତିନୋଟି ସନ୍ତାନର ଅକାଳରେ ବିୟୋଗ ହୋଇଥିଲା । କାରଣ ପଞ୍ଚମାଧିପତି ବୁଧକୁ ରାହୁଙ୍କର ପଞ୍ଚମ ଦୃଷ୍ଟି(ବିପରୀତ ଦିଗରେ) ଅଛି ଏବଂ ଦ୍ୱାଦଶରେ ଶନି ଅବସ୍ଥିତ । ବୃହସ୍ପତି ମଧ୍ୟ ପାପକର୍ତ୍ତାରୀ ଯୋଗରେ ପୀଡ଼ିତ । ମୋର ବୋଉ ଅନେକ ପୂଜା,ଉପାସନା, ବ୍ରତ, ଉପବାସ କରି ସନ୍ତାନ ଲାଭ କରିଛି । ପ୍ରତିଦିନ ସୂର୍ଯ୍ୟଙ୍କ ଦର୍ଶନ ବିନା ସେ କିଛି ଖାଇବ ନାହିଁ । ମେଘୁଆ ପାଗ ହେଲେ ଉପବାସ ରହିବା ମୁଁ ଦେଖିଛି । ତେଣୁ ସୂର୍ଯ୍ୟ ଉପାସନା ପାଇଁ ମୁଁ ମଧ୍ୟ ଅନେକ ଦିନରୁ ପ୍ରଭାବିତ ।

ସୂର୍ଯ୍ୟଙ୍କ ଉପାସନା ପ୍ରତ୍ୟେକ ହିନ୍ଦୁଙ୍କର କର୍ତ୍ତବ୍ୟ । ସ୍ନାନ ପରେ ଭକ୍ତି ସହକାରେ ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାଦ କରି ସ୍ତୁତି କରିବା ଉଚିତ । ସୂର୍ଯ୍ୟ ହେଉଛନ୍ତି ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣ । ସ୍ନାନପରେ ପ୍ରତ୍ୟେକ ହିନ୍ଦୁ ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାନ କରି ନିମ୍ନଲିଖିତ ଶ୍ଳୋକ ଆବୃତି କରିବା ଉଚିତ ।

ଜବା କୁସୁମ ସଂକାଶଂ କାଶ୍ୟପେୟଂ ମହାଦ୍ୟୁତିଂ,  
ଧ୍ୱାନ୍ତାରିଂ ସର୍ବପାପାଘ୍ନଂ ପ୍ରଣତୋସ୍ମି ଦିବାକରଂ ।  
ଓଁ ନମୋ ସବିତ୍ରେ ଜଗଦେକ ଚକ୍ଷୁସେ  
ଜଗତ୍ ପ୍ରସୂତି, ସ୍ଥିତି, ନାଶ ହେତବେ  
ତ୍ରୟୀ ମୟାୟ ତ୍ରିଗୁଣାତ୍ମକ ଧାରିଣେ  
ବିରଞ୍ଚି ନାରାୟଣ ଶଙ୍କରାତ୍ମନେ ।

ଶନି ମହାଦଶା ଓ ରାହୁ ଅନ୍ତର ଦଶାରେ ତା ୧୬.୭.୧୯୭୮, ଆଷାଢ, ଶୁକ୍ଳ, ଏକାଦଶୀ, ରବିବାର ଭୋର ଛଅ ଘଣ୍ଟା ସମୟରେ ପବିତ୍ର ମୁହୂର୍ତ୍ତରେ ତାର ତିରୋଧାନ ହୋଇଥିଲା । ଶନି ଦ୍ୱାଦଶରେ ଏବଂ ରାହୁ ଅଷ୍ଟମରେ ଏହା ମୃତ୍ୟୁର ସୂଚନା ଦିଏ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଆସ୍ତେ ଆସ୍ତେ କୃଷ୍ଣ କୃଷ୍ଣ କହୁଥିବା ଶୁଣାଯାଉଥିଲା । ଧର୍ମାଧିପତି ଶୁକ୍ର ପଞ୍ଚମରେ ଥିବା ଆତ୍ମାର ସଦ୍‌ଗତିର ସୂଚନା ଦିଏ ।

# ଗୋସେଇଁ ମା

ମୋ ନନା ତାଙ୍କର କକା ନରହରି ପଣ୍ଡାଙ୍କୁ ଦତ୍ତ ହୋଇଥିଲେ । ନରହରି ପଣ୍ଡାଙ୍କର ବିଧବା ସ୍ତ୍ରୀ ହେଉଛନ୍ତି ମୋର ଗୋସେଇଁ ମା । ମୋ ପ୍ରତି ତାଙ୍କର ଆଦରର ସୀମା ନ ଥିଲା । ଛୋଟ ଠାରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ମୋର ପାଳନ ପୋଷଣରେ ଦିନ କାଟୁଥିଲେ । ଏଥିରେ ସେ ଆନନ୍ଦ ଉପଭୋଗ କରୁଥିଲେ । ସେ ବାଲ୍ୟ ବିଧବା ଥିଲେ । ତାଙ୍କର ବାପଘର ସିବୁଳିଆ ଗ୍ରାମ । କବିସୂର୍ଯ୍ୟ ନଗର ନିକଟରେ ।

ମୁଁ ଓ ମୋର ଦୁଇ ଭାଇ ବ୍ରହ୍ମପୁରରେ ଘରଭଡ଼ାନେଇ ଯେତେବେଳେ ପଢ଼ାପଢ଼ି କରୁଥିଲୁ । ସେ ଆମକୁ ରାନ୍ଧିକରି ଦେଉଥିଲା । ତାର ମୃତ୍ୟୁ ମଧ୍ୟ ଆକସ୍ମିକ ଭାବରେ ହୋଇଥିଲା । ଦିନେ ବ୍ରହ୍ମପୁର ବସାରେ ପ୍ରାୟ ଅର୍ଦ୍ଧରାତ୍ରି ସମୟକୁ ତାର ଝାଡ଼ା ବାନ୍ତି ହେଲା । ସେତେବେଳକୁ ବସାରେ ମୁଁ ଏକଲା ଥିଲି । ହଠାତ୍ କୌଣସି ଡ଼ାକ୍ତରଙ୍କୁ ଡ଼ାକି ଚିକିତ୍ସା କରିବା ବ୍ୟବସ୍ଥା ସମ୍ଭବ ନଥିଲା । ରାତିସାରା ସେ ବିଛଣାରେ କେତେ ଥର ଝାଡ଼ା ଯାଇଛି ତାର ହିସାବ ନାହିଁ । ରାତି ପାହିଲା ବେଳକୁ ମୁଁ ଗୋଟିଏ ଝଟକା ଘୋଡ଼ା ଗାଡ଼ି ଆଣି ତାକୁ ଗାଁକୁ ନେଇଗଲି । ଗାଁରେ ଘରେ ପହଞ୍ଚିଲା ସଙ୍ଗେ ସଙ୍ଗେ ସେ ''ଶିବ'', ''ଶିବ'' ବୋଲି ତାର ପୁଅକୁ ଡ଼ାକିଥିଲା । ନନା ଆସି ପାଟିରେ ଟିକିଏ ପାଣି ଦେଲେ । ସେ ପାଣି ଟକ ପେଟକୁ ଯାଇଛି କି ନାହିଁ ତାର ପ୍ରାଣବାୟୁ ଚାଲିଗଲା ।

ରାତିସାରା ସେ ଯେଉଁ ବିଛଣାରେ ଝାଡ଼ା ବାନ୍ତି କରିଥିଲା ସେତକ ନିକଟସ୍ଥ ଗୋଟିଏ ପୋଖରୀରେ ଧୋଇ ମୁଁ ଗାଁକୁ ନେଇଯାଇଥିଲି । ଏଇତକ ସେବାର ସୁଯୋଗ ପାଇଥିବାରୁ ମୁଁ ମୋର ଗୋସେଇଁ ମା ପାଇଁ କିଛି କରିପାରିଛି ବୋଲି ମନରେ ସାନ୍ତ୍ୱନା ପାଇବା ଛଡ଼ା ମୁଁ ତାର କିଛି କରିପାରି ନାହିଁ ।

କୌଣସି ରୋଗ ଯନ୍ତ୍ରଣା ନଭୋଗି ଏବଂ ଶଯ୍ୟାଶାୟୀ ନ ହୋଇ ହଠାତ୍ ମୃତ୍ୟୁ ବରଣ କରିଥିବା ହେତୁ ସେ ଗୋଟିଏ ଉତ୍ତମ ଆତ୍ମାର ଅଧିକାରୀ ଥିଲା ବୋଲି ମୁଁ ଭାବୁଛି ।

# ପିଉସୀ ନାନୀ

ମୋର ଜଣେ ପିଉସୀ ନାନୀ ଅର୍ଥାତ୍ ନନାଙ୍କର ନିଜ ଭଉଣୀ ପାଣ୍ଡିଆ ଗ୍ରାମରେ ଥାଆନ୍ତି । ସେ ବିଧବା । ତାଙ୍କର ଗୋଟିଏ ମାତ୍ର ଝିଅକୁ ସେ ବିବାହ କରିଦେଇଥାନ୍ତି । ଘରେ ଏକା ରହୁଥାନ୍ତି । ମୋର ଗୋସେଇଁ ମାଙ୍କ ମୃତ୍ୟୁ ପରେ ଏହି ପିଉସୀ ନାନୀ ବ୍ରହ୍ମପୁର ଆସି ବସାରେ ରହି ଆମ ତିନିଭାଇଙ୍କ ପାଇଁ ରନ୍ଧାରନ୍ଧି କରିଦେଉଥିଲେ । ସେ ଆମ ସମସ୍ତଙ୍କୁ

ପୁଅପରି ସ୍ନେହ କରନ୍ତି । ବିଶେଷ କରି ମତେ ସେ ଅତ୍ୟନ୍ତ ସ୍ନେହ କରନ୍ତି । ବ୍ରହ୍ମପୁର ବସାରେ ରହି ସେ ଅନେକ ଦିନ ଆମପାଇଁ ରାନ୍ଧି କରି ଦେଇଥିଲେ ।

ମୁଁ ଚାକିରି କଲାପରେ ମୁଁ ପିଉସୀ ନାନୀଙ୍କୁ ପୁରୀ, କଟକରେ କେତେ ଦିନ ମୋ ପାଖରେ ରଖିତାର ଇଛା ଅନୁସାରେ ପୁରୀ, କୋଣାର୍କ,ଚନ୍ଦ୍ରଭାଗା, ଭୁବନେଶ୍ୱର ଆଦି ତୀର୍ଥ ଯାଗା ବୁଲାଇ ଦେଖାଇଛି । ସେ ଆମ ପାଇଁ ଯାହା କରିଥିଲେ ତାହା ଭୁଲିବାର ନୁହେଁ ।

# ନାନାଙ୍କ ତୀର୍ଥଯାତ୍ରା

ଗୟାରେ ପିଣ୍ଡଦାନ କରିବା ପାଇଁ ନନା, ବୋଉ ଓ ମୁଁ ତା ୧୭.୪.୧୯୭୫ରେ ଯାଇଥିଲୁ । ନନା ତାଙ୍କର ଦତ୍ତ ପିତା ଓ ମାତାଙ୍କ ପାଇଁ ଏହା ପୂର୍ବରୁ ସେ ଗୟାରେ ପିଣ୍ଡ ଦେଇଥିଲେ । କିନ୍ତୁ ପିଣ୍ଡ ଦେବାର ୧୨ ବର୍ଷ ପୁରିଯିବାରୁ ପୁଣି ସେ ପିତୃ ଶ୍ରାଦ୍ଧ କରିବାକୁ ଗୟା ଯାଇଥିଲେ । ଗୟାରେ ପିଣ୍ଡ ଦେଇ ପୁରୀ ଯାଇ ସେଠାରୁ ଭୁବନେଶ୍ୱର ଫେରିଆସିଥିଲୁ ।

ଥରେ ଗୟାରେ ପିଣ୍ଡ ଦେଲେ ୧୨ ବର୍ଷ ପରେ ପୁଣି ପିଣ୍ଡ ଦେବାକୁ ପଡିଥାଏ ।

ମୁଁ ପୁରୀରେ ପ୍ରାୟ ସାତ ବର୍ଷ ଚାକିରି କରିଥିଲି । ବେଳେ ବେଳେ ନନା ରଥଯାତ୍ରା ଆଦି ବିଭିନ୍ନ ପର୍ବପର୍ବାଣି ବେଳେ ପୁରୀ ଆସି ମୋ ବସାରେ ରହୁଥିଲେ । ନନାଙ୍କ ଦେହାନ୍ତ ପରେ ମୁଁ ତା ୪.୬.୧୯୮୨ରେ ଆଲାହାବାଦରେ ତ୍ରୀବେଣୀ ସଙ୍ଗମରେ ନନା ଓ ବୋଉଙ୍କର ଅସ୍ଥି ବିସର୍ଜନ କରିଥିଲି । ତା ୩.୧୦.୧୯୮୬ ରେ ଗୟା ଯାଇ ମହାଳୟା ଅମାବାସ୍ୟା ଦିନ ନନା ଓ ବୋଉଙ୍କ ପାଇଁ ଶ୍ରାଦ୍ଧ ଓ ପିଣ୍ଡ ଦାନ ସମାପନ କରିଥିଲି । ମୁଁ ଯେଉଁ ତୀର୍ଥକୁ ଯାଏ ସେଠାରେ ସମୁଦ୍ର କିମ୍ବା ନଦୀରେ ନନାଙ୍କ ଦ୍ୱାରା ଲିଖିତ ମହାମନ୍ତର କିଛି କାଗଜ ତୀର୍ଥ ଜଳରେ ଭସାଇ ଦିଏ ।

# ନନାଙ୍କ ମହାମନ୍ତ୍ର ଲେଖା

ହିନ୍ଦୁ ସଂସ୍କୃତି ଓ ସମାଜରେ ଗୁରୁ ପରମ୍ପରା ଅତି ପ୍ରାଚୀନ ଓ ଗୁରୁତ୍ୱପୂର୍ଣ୍ଣ । ଆମର ଗୁରୁ ହେଉଛନ୍ତି ପୁରୀର ହରଚଣ୍ଡି ସାହିରେ ଥିବା ନାଗାମଠର ମହନ୍ତ । ଏହି ମଠ ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟ ଶ୍ରୀ ଜୀବ ଗୋସ୍ୱାମୀ ପରମ୍ପରାନୁଗତ । ନନା ଓ ଆମ ବଂଶର ସମସ୍ତେ ନାଗା ମଠ ମହନ୍ତଙ୍କ ଠାରୁ ଗୁରୁମନ୍ତ୍ର ଗ୍ରହଣ କରିଛୁ । ବ୍ରତୋପନୟନ ପରେ ଥରେ ଗୁରୁ ଆମଗାଁକୁ ଆସିଥିଲେ । ସେତେବେଳେ ସମସ୍ତେ ଗୁରୁମନ୍ତ୍ର ନେଇଛୁ । ନନାଙ୍କ ସହ ମୁଁ ପୁରୀ ନାଗା ମଠକୁ ଯାଇଛି । ଗୁରୁମନ୍ତ୍ର ଗ୍ରହଣ ପରମ୍ପରା ଆଜିକାଲି ମୃତପ୍ରାୟ ।

ପ୍ରତିଦିନ ସ୍ନାନ ପରେ ସେ କିଛି ସମୟ ପୂଜା, ଉପାସନା, ଜପ,ଧ୍ୟାନ, ଗୀତା, ଭାଗବତରୁ କିଛି ଶ୍ଳୋକ ପାଠ କରୁଥିଲେ ।

ନନା ତାଙ୍କର ମୃତ୍ୟୁ ପୂର୍ବରୁ ପ୍ରାୟ ୧୫/୧୬ ବର୍ଷ ମହାମନ୍ତ୍ର ଲେଖା ଆରମ୍ଭ କରିଥିଲେ । ମହାମନ୍ତ୍ରଟି ହେଲା :-

**ହରେକୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ,**

**ହରେ ରାମ ହରେ ରାମ, ରାମ ରାମ ହରେ ହରେ ।**

ଏହି ମନ୍ତ୍ରଟି ସେ ତାଙ୍କର ଅବସର ସମୟରେ ଲେଖୁଥିଲେ । ଏହି ମନ୍ତ୍ର ଲେଖା ଖାତା ଅନେକ ହୋଇଯାଇଥିଲା । ମୃତ୍ୟୁ ପୂର୍ବରୁ ସେ ମତେ କହିଥିଲେ ଯେ ଏହି ମନ୍ତ୍ରଲେଖା ଖାତାସବୁ ରଖି ଗୋଟିଏ ସ୍ମୃତିସ୍ତମ୍ଭ ଆମଗାଁର ଜଗନ୍ନାଥ ମନ୍ଦିର ସମନାରେ ଗୋଟିଏ କଡ଼କୁ ତୟାର କରିବା ପାଇଁ । ତାଙ୍କ କହିବା ଅନୁସାରେ ମୁଁ କୁକୁଡ଼ାଖଣ୍ଡି ଜଗନ୍ନାଥ ମନ୍ଦିର ସାମନାରେ ଯେଉଁ ତୁଳସୀ ଚଉଁରା ଅଛି ତାରି ପାଖରେ ଗୋଟିଏ ସ୍ମୃତି ସ୍ତମ୍ଭ କରି ତାରିଭିତରେ ମହାମନ୍ତ୍ର ଖାତା ସବୁ ରଖି ଦେଇଛି । ମାର୍ବଲ ପଥରରେ ଗୋଟିଏ ଫଳକ କରି ତାଙ୍କର ଆବିର୍ଭାବ ଓ ତିରୋଭାବ ତାରିଖ ଏବଂ ମହାମନ୍ତ୍ର ସ୍ମୃତିସ୍ତମ୍ଭ ବୋଲି ଲେଖା ହୋଇଛି । ତା ୩୧.୮.୧୯୮୬ ରେ ଏହି ସ୍ତମ୍ଭଟି ସ୍ଥାପନା କରିଛି ।

ମୁଁ ଯେଉଁ ତୀର୍ଥକୁ ଯାଇଛି ସେଠାରେ ଥିବା ନଦୀ, ସରୋବର କିମ୍ବା ସମୁଦ୍ରରେ ନନାଙ୍କ ଦ୍ୱାରା ଲିଖିତ ମହାମନ୍ତ୍ର ଖାତାର କେତେକ ପୃଷ୍ଠା ତୀର୍ଥଜଳରେ ଭସାଇଛି ।

# ନନାଙ୍କ ଭୁବନେଶ୍ୱରରେ ରହଣି

୧୯୪୯ରୁ ମୁଁ ପ୍ରଥମେ ପୁରୀରେ ଏବଂ ତାପରେ ୧୯୫୯ରୁ ଭୁବନେଶ୍ୱରରେ ଏକାଉଣ୍ଟେଣ୍ଟ ଜେନେରାଲ ଅଫିସରେ ଚାକିରି କରିଥିଲି । ତେଣୁ ୧୯୪୯ରୁ ସବୁବେଳେ ଗାଁ ବାହାରେ ରହିଲି ମଝିରେ ମଝିରେ ଛୁଟିରେ ଗାଁକୁ ଯାଏ । ପୁରୀରେ ପ୍ରାୟ ଛଅ ବର୍ଷ ରହିବା ପରେ ଚାକିରିରୁ ଅବସର ନେବା ପର୍ଯ୍ୟନ୍ତ ଭୁବନେଶ୍ୱରରେ ରହିଲି । ନନା ଓ ବୋଉ ବେଳେ ବେଳେ ମୋ ପାଖରେ ଆସି ରହନ୍ତି । କିନ୍ତୁ ବେଶି ଦିନ ରହିପାରନ୍ତି ନାହିଁ । ଗାଁରେ ମନ୍ଦିର ପାଳି, ଯଜମାନ,ଗାଈଙ୍କ ରକ୍ଷଣା ବେକ୍ଷଣ ଇତ୍ୟାଦି କାମ ହେତୁ ସେ ବେଶିଦିନ ରହିପାରନ୍ତି ନାହିଁ ।

ଯେତେବେଳେ ବୃଦ୍ଧାବସ୍ଥା ଆସିଲା ଏବଂ କୌଣସି କାର୍ଯ୍ୟ କରିବା ସମ୍ଭବ ହେଲା ନାହିଁ ସେତେବେଳେ ୧୯୭୭ରୁ ଭୁବନେଶ୍ୱର ଆସି ମୋ ପାଖରେ ବରାବର ରହିଥିଲେ ।

୧୯୭୭ ସାଲରୁ ନନା ଭୁବନେଶ୍ୱର ଆସି ମୃତ୍ୟୁ ପର୍ଯ୍ୟନ୍ତ ମୋ ପାଖରେ ଥିଲେ । ନନା ଆସିବାର ପ୍ରାୟ କେତେମାସ ପରେ ବୋଉ ମଧ୍ୟ ଭୁବନେଶ୍ୱର ଆସି ରହିଲା । ବୋଉ ଭୁବନେଶ୍ୱର ଆସି ପ୍ରାୟ ଏକ ବର୍ଷ ରହିବା ପରେ ତାର ମୃତ୍ୟୁ ହୋଇଥିଲା । ବୋଉର ଦେହାନ୍ତ ଆଷାଢ଼, ଶୁକ୍ଳ, ଏକାଦଶୀ, ରବିବାର ଭୋର ଛଅ ଘଣ୍ଟା ସମୟରେ, ଇଂରାଜୀ ତା ୧୬.୭.୧୯୭୮ରେ ହୋଇଥିଲା । ନନାଙ୍କର ତିରୋଭାବ ଇଂରାଜି ତା ୨୪.୩.୧୯୮୨, ଚୈତ୍ର. ଅମାବାସ୍ୟା, ବୁଧବାର,ଅପରାହ୍ନ ଘ ୭.୪୫ ମିନଟରେ ହୋଇଥିଲା । ଦୁହିଁଙ୍କର ଦେହାନ୍ତ ଭୁବନେଶ୍ୱରରେ ହୋଇଥିଲା ।

# ନନାଙ୍କର ଦେହାନ୍ତ

ବୋଉର ଦେହାନ୍ତ ମୋ ପକ୍ଷରେ ଏକ ବିସ୍ମୟକର ଘଟଣା । ମୁଁ ଜନ୍ମ ହେବା ଆଗରୁ ମୋ ବୋଉର ତିନୋଟି ସନ୍ତାନର ଅକାଳ ମୃତ୍ୟୁ ହୋଇଥିଲା । ତେଣୁ ମୁଁ ଜନ୍ମ ହେବା ବେଳେ ମୋର ବୋଉର ଆଖିରେ ପଟି ବାନ୍ଧି ଦିଆଯାଇଥିଲା, ଯେପରି ସେ ମତେ ଦେଖିପାରିବ ନାହିଁ । ମତେ ଗ୍ରାମର ଗୋଟିଏ ଦଣ୍ଡାସି(ହରିଜନ) ସ୍ତ୍ରୀଙ୍କୁ ଦିଆଯାଇଥିଲା । ସେ ସ୍ତ୍ରୀ ଜଣକ ମଧ୍ୟ ସେତେବେଳେ ଗୋଟିଏ ଶିଶୁ ଜନ୍ମ କରିଥାନ୍ତି । ତାଙ୍କର ଜନ୍ମିତ ପିଲା ଏବଂ ମତେ ସେ ସ୍ତନ୍ୟ ପାନ ଦେଇ ପାଳିଥିଲେ । ଆଗରୁ ଏପରି କରିବା ପାଇଁ ଠିକ୍ ହୋଇଥିଲା । ମୁଁ ପ୍ରାୟ ତିନି ଚାରି ମାସ ସେହି ହରିଜନ ସ୍ତ୍ରୀଙ୍କ ସ୍ତନ୍ୟପାନ କରି ବଞ୍ଚିଲା ପରେ ମତେ ମୋର ବୋଉ ପାଖକୁ ଅଣାଯାଇଥିଲା । ସେତେବେଳେ ଏହି ପ୍ରଥା ପ୍ରଚଳିତ ଥିଲା । ତେଣୁ ମୋର ଡ଼ାକ ନାମ ଥିଲା ଦଣ୍ଡାସି । ପରେ ଏହା ଦଣ୍ଡପାଣିରେ ପରିବର୍ତ୍ତନ କରାଯାଇଥିଲା ।

ମୋର ବୋଉ ମଲାବେଳେ ମଧ୍ୟ ମୁଁ ଆକସ୍ମିକ ଭାବେ ଅନୁପସ୍ଥିତ ଥିଲି । ତାର ଶେଷ ନିଶ୍ୱାସ ଯିବାବେଳକୁ ମୁଁ ପାଖରେ ନଥିଲି ଦୂରରେ ଥିଲି । ଅବଶ୍ୟ ମୁଁ ପରେ ଆସି ତାର ଶବ ଦାହ କରିଥିଲି ।

ମୃତ୍ୟୁ ବେଳକୁ ନନା କିମ୍ବା ବୋଉର ସେପରି କିଛି ଗୁରୁତର ବେମାରୀ ନଥିଲା । କେବଳ ବାର୍ଦ୍ଧକ୍ୟ ଜନିତ ଅସୁସ୍ଥତା ଛଡ଼ା ଅନ୍ୟ କିଛି ହୋଇ ନ ଥିଲା । ଅବଶ୍ୟ ଦୁହେଁ କିଛି ସମୟ ଶଯ୍ୟାଶାୟୀ ହୋଇଥିଲେ । ସ୍ନାନ,ଶୌଚ ଆଦି କରିବା ପାଇଁ ନିଜେ ଯାଇପାରୁ ନଥିଲେ ।

ଭୁବନେଶ୍ୱରରେ ନନା ଓ ବୋଉଙ୍କର ମୃତ୍ୟୁ ହୋଇଥିଲେ ସୁଦ୍ଧା, ଅସ୍ଥି ସଂଗ୍ରହ କରି ମୃତ୍ୟୁ ଦିବସର ଚାରିଦିନ ଠାରୁ କୁକୁଡ଼ାଖଣ୍ଡିରେ ଶୁଦ୍ଧି କ୍ରିୟା କାର୍ଯ୍ୟ ହୋଇଥିଲା । ଦୁହିଙ୍କ ପ୍ରଥମ ବାର୍ଷିକ ଶ୍ରାଦ୍ଧ ଦିବସ ମଧ୍ୟ କୁକୁଡ଼ାଖଣ୍ଡିରେ ଜ୍ଞାତି, ବନ୍ଧୁ, ବାନ୍ଧବଙ୍କ ସହିତ ସଂପାଦନ କରାଯାଇଥିଲା ।

# ଆଦର୍ଶ ଦମ୍ପତି

ମୋ ନନା ଓ ବୋଉ ଆଦର୍ଶ ଦମ୍ପତି ଥିଲେ । ଜୀବନ କାଳ ସତ୍‌କର୍ମ ଓ ସତ୍ ଚିନ୍ତାରେ ଅତିବାହିତ କରିଥିଲେ । ଦୁହେଁ ଧାର୍ମିକ ଥିଲେ । ପୂଜା ଉପାସନା ଆଦି କରୁଥିଲେ । ପ୍ରଥମ ତିନୋଟି ସନ୍ତାନ ନଷ୍ଟ ହେବାରୁ ଧର୍ମ କର୍ମ କର୍ମାଣୀ କରିବାରେ ଅନେକ ସମୟ କଟାଉଥିଲେ। ନନା ପୂଜା ପାଠ ଏବଂ ବୋଉ ବ୍ରତ, ଉପାସନାରେ ବ୍ୟସ୍ତ ରହୁଥିଲେ । ନନା ପ୍ରତ୍ୟେହ ତୁଳସୀ ମଞ୍ଜରି ତୋଳି, ସୁବାସ ଚନ୍ଦନ ଓ କର୍ପୂର ସେହି ତୁଳସୀରେ ଗୋଳେଇ ମନ୍ତପାଠ କରି ଗୋଟିଏ ଗୋଟିଏ ମଞ୍ଜରି ଜଗନ୍ନାଥଙ୍କ ମସ୍ତକରେ କିମ୍ବା ଘରେ ପୂଜାପାଉଥିବା ଶାଳଗ୍ରାମରେ ଦେଉଥିଲେ । ଏପରି ଅନେକ ବର୍ଷ ସେ କରିଥିଲେ । ପ୍ରତିଦିନ ସୂର୍ଯ୍ୟଙ୍କ ଦର୍ଶନ ନ ପାଇଲେ ମୋ ବୋଉ ଜଳ ସ୍ପର୍ଶ କରୁନଥିଲେ । ଏପରି ବ୍ରତ ଅନେକ ଦିନ ପାଳନ କରିବା ମୁଁ ଦେଖିଛି । ସେ ନାନା ବ୍ରତ ଓ ଉପବାସ ପାଳନ କରୁଥିଲେ । ଉଭୟଙ୍କର ଏପରି ଭାବରେ ନିଷ୍ଠା ହେତୁ ଭଗବାନ ତାଙ୍କୁ ତିନୋଟି ପୁତ୍ର ଓ ଗୋଟିଏ କନ୍ୟା ସନ୍ତାନର ପିତା ମାତା ହେବାର ସୁଯୋଗ ଦେଇଥିଲେ ।

ନନା ତାଙ୍କର ପୁଅମାନଙ୍କୁ ଉଚିତ ଶିକ୍ଷା ଦେବା ସହ ଯଥାରିତି ମର୍ଯ୍ୟାଦା ସହକାରେ ତିନୋଟି ପୁଅର ଉପନୟନ ଏବଂ ତିନୋଟି ପୁଅ ଓ ଗୋଟିଏ ଝିଅର ବିବାହ ସମ୍ଭ୍ରାନ୍ତ ପରିବାରରେ କରିଥିଲେ । ତାଙ୍କର ମୃତ୍ୟୁ ବେଳକୁ ସେ ସବୁ ପୁଅ ଓ ଝିଅଙ୍କର ନାତି ଓ ନାତୁଣି ଦେଖିଯାଇଛନ୍ତି।

ଭଗବାନଙ୍କ ଠାରେ ମୁଁ ପ୍ରାର୍ଥନା କରି ଉଭୟଙ୍କର ଆତ୍ମାର ସଦ୍‌ଗତି କାମନା କରି ମୁଁ ତାଙ୍କର ଜୀବନୀ ସମାପ୍ତ କରୁଛି ।

# ମୋ ନିଜ କଥା

ମୋର ଜନ୍ମ କୁକୁଡ଼ାଖଣ୍ଡି ଗ୍ରାମରେ ୧୯୨୫ ମସିହା ଅକ୍ଟୋବର ପନ୍ଦର ତାରିଖ, କାର୍ତ୍ତିକ, କୃଷ୍ଣ ପକ୍ଷ, ତ୍ରୟୋଦଶୀ, ଗୁରୁବାର, ଅପରାହ୍ନ ଘ ୩. ୧୩ ମିନଟରେ ହୋଇଥିଲା । ମୋର ଜନ୍ମ କୋଷ୍ଠୀ ନିମ୍ନରେ ଦିଆଗଲା ।

କୁମ୍ଭ ଲଗ୍ନ, କନ୍ୟା ରାଶି, ଉତ୍ତରାଫାଲ୍‌ଗୁନୀ ନକ୍ଷତ୍ରରେ ଜନ୍ମ । ଜନ୍ମ ସମୟକୁ ରବି ମହାଦଶା ବାକିଥିଲା ବ ୩.୧୦.୨ ଦିନ ।







| ଗ୍ରହସ୍ଫୁଟ | ରା. ଡ଼ି. ମି. | ନକ୍ଷତ୍ର | ନକ୍ଷତ୍ରାଧିପତି |
|---|---|---|---|
| ରବି | ୫. ୨୮ ୪୫ | ଚିତ୍ରା (୧୪) | ମଙ୍ଗଳ |
| ଚନ୍ଦ୍ର | ୫. ୧. ୨୮ | ଉତ୍ତରାଫାଲ୍‌ଗୁନୀ (୧୨) | ରବି |
| ମଙ୍ଗଳ | ୫. ୧୭.୧୦ | ହସ୍ତା (୧୩) | ଚନ୍ଦ୍ର |
| ବୁଧ | ୬. ୪. ୨୦ | ଚିତ୍ରା (୧୪) | ମଙ୍ଗଳ |
| ବୃହସ୍ପତି | ୮. ୨୧.୫୫ | ପୂର୍ବାଷାଢା (୨୦) | ଶୁକ୍ର |
| ଶୁକ୍ର | ୭. ୧୧.୪୩ | ଅନୁରାଧା(୧୭) | ଶନି |
| ଶନି | ୬. ୨୧.୧୦ | ବିଶାଖା (୧୬) | ବୃହସ୍ପତି |
| ରାହୁ | ୩. ୭. ୩୦ | ପୁଷ୍ୟା (୮) | ଶନି |
| କେତୁ | ୯. ୭. ୩୦ | ଉତ୍ତରାଷାଢା(୨୧) | ରବି |
| ଲଗ୍ନ | ୧୦.୧୬.୪୭ | ଶତଭିଷା(୨୪) | ରାହୁ |

ମୋର କୁମ୍ଭ ଲଗ୍ନ ହେତୁ ଜ୍ୟୋତିର୍ବିଦ୍ୟାରେ ରୁଚି ଏବଂ କନ୍ୟା ରାଶି ହେତୁ ଲେଖାଲେଖିରେ ସଫଳତା ଲାଭ କରିବାରେ ଅନୁକୂଳ ହୋଇଛି । ଲଗ୍ନାଧିପତି ଶନି ଓ

ପଞ୍ଚମାଧିପତି ବୁଧ ଏକତ୍ର ଭାଗ୍ୟ ସ୍ଥାନରେ ଥିବା ହେତୁ ଜ୍ୟୋତିଷ ଗ୍ରନ୍ଥ ରଚନା କରି ପ୍ରକାଶ କରିଛି ଏବଂ ବିଭିନ୍ନ ପତ୍ରପତ୍ରିକାରେ ପ୍ରବନ୍ଧ ପ୍ରକାଶ କରିପାରିଛି ।

ଜାତକରେ ଲଗ୍ନାଧିପତି ଶନି ଉଚ୍ଚରେ ଏବଂ ପଞ୍ଚମାଧିପତି ବୁଧଙ୍କ ସହ ଭାଗ୍ୟସ୍ଥାନରେ ରହି ରାଜ ଯୋଗ ସୃଷ୍ଟି କରୁଛନ୍ତି । କିନ୍ତୁ ଶନି ଦ୍ୱାଦଶାଧିପତି ଏବଂ ନବାଂଶରେ ନୀଚ ଏବଂ ବୁଧ ଅଷ୍ଟମାଧିପତି ଯୋଗୁ ସଂପୂର୍ଣ୍ଣ ଶୁଭ ଫଳ ଦେବାରେ ପ୍ରତିବନ୍ଧକ ହୋଇଛି । ଚନ୍ଦ୍ର ଓ ବୃହସ୍ପତି ପରସ୍ପର କେନ୍ଦ୍ରରେ ରହି ଗଜକେଶରୀ ଯୋଗ ସୃଷ୍ଟି କରୁଛନ୍ତି । ଭାଗ୍ୟାଧିପତି ଓ କେନ୍ଦ୍ରାଧିପତି ଶୁକ୍ର ଏକାକୀ ଯୋଗ କାରକ ହୋଇ ଦଶମ କେନ୍ଦ୍ରରେ ଅବସ୍ଥିତ । କିନ୍ତୁ ତାଙ୍କୁ କେନ୍ଦ୍ରାଧିପତି ଓ ବାଧକାଧିପତି ଦୋଷ ମଧ୍ୟ ଅଛି । ଷଷ୍ଠାଧିପତି ଚନ୍ଦ୍ର ଅଷ୍ଟମରେ ରହି ବିପରିତ ରାଜଯୋଗ ସୃଷ୍ଟି କରୁଛନ୍ତି । ଜାତକରେ ଉପରୋକ୍ତ ଶୁଭ ଯୋଗ ଫଳରେ କର୍ମମୟ ଜୀବନରେ ସଂପୂର୍ଣ୍ଣ ସଫଳତା ହାସଲ ପାଇ ନଥିଲେ ସୁଦ୍ଧା ହତାଶା ହେବାକୁ ପଡ଼ିନାହିଁ ।

ଚନ୍ଦ୍ର ଅଷ୍ଟମରେ ତୃତୀୟାଧିପତି ମଙ୍ଗଳଙ୍କ ସହ ଯୁକ୍ତ ହେତୁ ମୁଁ ଜନ୍ମରୁ ନିଜ ମାତାଙ୍କର ସ୍ତନ୍ୟପାନ ସୁଯୋଗରୁ ବଞ୍ଚିତ ହୋଇ ଅନ୍ୟ ଏକ ସ୍ତ୍ରୀଙ୍କର ସ୍ତନ୍ୟପାନ କରି ବଞ୍ଚିଥିଲି ।

କର୍ମାଧିପତି ମଙ୍ଗଳ ଅଷ୍ଟମସ୍ଥ ହେତୁ ଚାକିରିରେ ଉଚ୍ଚପଦକୁ ପ୍ରମୋସନ୍ ପାଇପାରି ନ ଥିଲି । ଅବଶ୍ୟ ଯୋଗ କାରକ ଶୁକ୍ର କର୍ମସ୍ଥାନରେ ଥବା ହେତୁ କର୍ମ କ୍ଷେତ୍ରରେ ଦକ୍ଷତା ଓ ସମ୍ମାନ ଲାଭ କରିଥିଲି । ଜୀବନ ସାରା ଗୋଟିଏ ଚାକିରୀରେ ରହିବାର ସୁଯୋଗ ମିଳିଥିଲା । ଶୁକ୍ରଙ୍କର ଦୃଷ୍ଟି ଚତୁର୍ଥ ଭାବକୁ ଥିବା ହେତୁ ଭୁବନେଶ୍ୱରରେ ନିଜ ବାସଗୃହ ନିର୍ମାଣ କରିପାରିଥିଲି ।

ଏକାଦଶସ୍ଥ ବୃହସ୍ପତି ସତ୍‌କର୍ମରୁ ରୋଜଗାର ପ୍ରଦାନ କରିଛନ୍ତି । ବୃହସ୍ପତି ନିଜେ ଧନାଧିପତି ଓ ଆୟାଧିପତି ହୋଇ ନିଜ ଗୃହରେ ଥିବା ହେତୁ ରୋଜଗାରକ୍ଷମ କରିଛନ୍ତି । ଅସତ୍ ପନ୍ଥାରେ ଧନ ଅର୍ଜନ କରିବାର ସୁଯୋଗ ଓ ସୁବିଧା ଥିଲେ ସୁଦ୍ଧା ସେଥିରୁ ଦୂରରେ ଥିଲି । କାଦୁଅକୁ ଯାଇ ଗୋଡ଼ରେ ପଙ୍କ ବୋଳିବା ଚାହିଁ ନ ଥିଲି ।

ମଙ୍ଗଳ ମହାଦଶା ଓ ଶୁକ୍ର ଅନ୍ତର ସମୟରେ ମାଟ୍ରିକ ପାସ କଲାପରେ ଅଳ୍ପ ସମୟ ପାଇଁ ମୁଁ ଏ.ଆଇ.ପି ରେ ଚାକିରି କରିଥିଲି । ରାହୁ ମହାଦଶା ଏବଂ ବୃହସ୍ପତି ଅନ୍ତର ଦଶାରେ ବି.ଏ ପାସ୍ କଲାପରେ ସ୍ଥାୟି ଚାକିରି ପାଇଥିଲି ।

ଜନ୍ମ ସମୟରେ ରବି ମହାଦଶା ଭୋଗ ହୋଇଥିଲା । ସପ୍ତମାଧିପତି ରବି ଅଷ୍ଟମସ୍ଥ ହେତୁ ବାଲ୍ୟ ସମୟରେ ମୁଁ ଅସୁସ୍ଥତା ଭୋଗ କରିଥିଲି । କିନ୍ତୁ ଲଗ୍ନାଧିପତି ଏବଂ ଅଷ୍ଟମ ସ୍ଥାନ ବଳବାନ ହେତୁ ମୁଁ ଦୀର୍ଘାୟୁ ଲାଭ କରିବାରେ ଭଗବାନଙ୍କର ଆଶୀର୍ବାଦ ଲାଭ କରିଛି ।

ଲଗ୍ନାଧିପତି ଓ ପଞ୍ଚମାଧିପତି ଧର୍ମ ସ୍ଥାନରେ ବଳବାନ ହୋଇଥିବା ହେତୁ ମୁଁ ସନ୍ତାନ ସୁଖ ପାଇଛି । ଧର୍ମ ଦିଗରେ ମଧ ଏହା ଅନୁକୂଳ ହୋଇଛି । ସନ୍ତାନମାନେ ସମସ୍ତେ ପ୍ରତିଷ୍ଠିତ ହୋଇପାରିଛନ୍ତି ।

ମୋର ନନା ଓ ବୋଉଙ୍କର ମଧ କୁମ୍ଭ ଲଗ୍ନ । ମୋର ମଧ କୁମ୍ଭ ଲଗ୍ନ ହେତୁ ମୁଁ ତାଙ୍କର ଆଶୀର୍ବାଦ ଲାଭ କରିଛି ବୋଲି ଅନୁଭବ କରେ ।

ଶନି ମହାଦଶା ଓ ଶୁକ୍ର ଅନ୍ତର ସମୟରେ ମୋର ପ୍ରଥମ ଜ୍ୟୋତିଷ ପୁସ୍ତକ ପ୍ରକାଶ ପାଇଥିଲା । ଶନି ମହାଦଶା ମଙ୍ଗଳ ଅନ୍ତରରେ ମୋର ଦ୍ୱିତୀୟ ଜ୍ୟୋତିଷ ପୁସ୍ତକ(ଇଂରାଜି) ଏବଂ ଏହି ପୁସ୍ତକର ପୁନଃ ପ୍ରକାଶ ଶନି ମହାଦଶା ରାହୁ ଅନ୍ତର ସମୟରେ ଏବଂ ତୃତୀୟ ପୁସ୍ତକ ଶନି ମହାଦଶା ବୃହସ୍ପତି ଅନ୍ତର ସମୟରେ ଏବଂ ଚତୁର୍ଥ ପୁସ୍ତକ ବୁଧ ମହାଦଶା ବୁଧ ଅନ୍ତର ସମୟରେ ହୋଇଥିଲା । ଶନି ଓ ବୁଧ ମହାଗ୍ରହ ମୋର ଖ୍ୟାତି ଓ ସମ୍ମାନ ବୃଦ୍ଧି କରିଛନ୍ତି ।

## ଶିକ୍ଷା

କୁକୁଡ଼ାଖଣ୍ଡି ମଧ ପ୍ରାଇମେରୀ ସ୍କୁଲରୁ ସପ୍ତମ ପାସ୍ କଲାପରେ ୧୯୩୮ରେ ମୁଁ ପଢ଼ିବା ପାଇଁ ବ୍ରହ୍ମପୁର ଯାଇଥିଲି । ବ୍ରହ୍ମପୁରର ଆସିକା ରୋଡ଼ରେ ମୁନିସିପାଲିଟି ମିଡ଼ଲ୍ ଇଂଲିଶ୍ ସ୍କୁଲରେ ସେତେବେଳର ନିୟମ ଅନୁସାରେ ପୁଣି ସପ୍ତମ ଶ୍ରେଣୀରେ ନାମ ଲେଖାଇଲି । ଏଠାରେ ମୋର ଗୋଟିଏ ଶିକ୍ଷା ବର୍ଷ ନଷ୍ଟ ହେଲା । ସେଠାରେ ଦୁଇବର୍ଷ ପଢ଼ିବା ପରେ ଖଲିକୋଟ କଲେଜର ହାଇସ୍କୁଲରେ ଜୁନ ୧୯୪୦ରେ ନାମ ଲେଖାଇଲି । ୧୯୪୩ରେ ଏସ୍.ଏସ୍.ଏଲ.ସି(ସେକେଣ୍ଡରୀ ସ୍କୁଲ ଲିଭିଙ୍ଗ୍ ସାର୍ଟିଫିକେଟ୍ ଅର୍ଥାତ୍ ମେଟ୍ରିକ) ପାସ୍ କଲି । ୧୯୩୬ରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହେଲେ ସୁଦ୍ଧା ଗଞ୍ଜାମର ଶିକ୍ଷା ବିଭାଗ ଆନ୍ଧ୍ରପ୍ରଦେଶର ଶିକ୍ଷା ଅଧୀନରେ ୧୯୪୫ ପର୍ଯ୍ୟନ୍ତ ଥିଲା । ଆନ୍ଧ୍ର ୟୁନିଭରସିଟିରେ ମାଟ୍ରିକ ପରୀକ୍ଷାକୁ ଏସ୍.ଏସ୍,ଏଲ.ସି କୁହାଯାଉଥିଲା ।

ବ୍ରହ୍ମପୁରରେ ପ୍ରଥମ ଦୁଇବର୍ଷ ମୁଁ ବିଭିନ୍ନ ମଠ ଏବଂ ହୋଟେଲରେ ରହି ପାଠପଢ଼ିଥିଲି । ମଠରେ ଓ ହୋଟେଲ୍‌ରେ ଖାଇବା ପାଇଁ ଟଙ୍କା ନ ଦେଇ ଚାଉଳ ଦେଲେ ମଧ ହେଉଥିଲା । ମୋ ନନାଙ୍କ ପକ୍ଷରେ ଚାଉଳ ଦେବା ସହଜ ଥିଲା । ଦୁଇବର୍ଷ ମୁଁ ବ୍ରହ୍ମପୁରରେ ପଢ଼ିବା ପରେ ମୋର ସାନ ଭାଇ ବ୍ରହ୍ମପୁର ପଢ଼ିବା ପାଇଁ ଆସିଲା । ତେଣୁ ଗୋଟିଏ ଘର ଭଡ଼ା ନେଇ ଖାଇବା ବ୍ୟବସ୍ଥା ପାଇଁ ମୋର ଗୋସେଇଁ ମା ଙ୍କୁ ବ୍ରହ୍ମପୁରରେ ରହିବାକୁ ହେଲା । ବ୍ରହ୍ମପୁର ବସାଘରକୁ ଗାଁରୁ ଚାଉଳ,ପରିବା ଇତ୍ୟାଦି ନନା ପଠାଉଥାନ୍ତି ।

ଗାଁ ପାଖ ହେତୁ ଛୁଟି ଦିନରେ ଆମେ କେହି ହେଲେ ଗାଁକୁ ଯାଇ ଚାଉଳ, ପରିବା ଆଣୁ । ସେତେବେଳେ ଗାଁକୁ ବସ୍ ଚାଲୁଥିଲେ ସୁଦ୍ଧା ବସ୍ ଭଡ଼ା ଦେବା ଆମ ପକ୍ଷେ ସମ୍ଭବ ନ ଥିଲା ।

୧୯୪୩ ଏପ୍ରେଲ୍‌ରେ ମୁଁ ଏସ୍.ଏସ୍.ଏଲ.ସି ପାସ୍ କଲାପରେ କଲେଜରେ ପଢିବା ପାଇଁ ଆର୍ଥିକ ପରିସ୍ଥିତି ଅନୁକୂଳ ନଥିଲା । କୌଣସି ଚାକିରି କଲେ ଆର୍ଥିକ ପରିସ୍ଥିତି ଭଲ ହେବ ବୋଲି ନାନଙ୍କର ମନୋଭାବ ଥିଲା । ମାଟ୍ରିକ୍ ପାସ୍ ପରେ ମତେ କିଛି ଦିନ ପାଇଁ ବାତ ହୋଇଥିଲା । ଆୟୁର୍ବେଦ ଔଷଧ ଦେଇ ନନା ଭଲ କରିଥିଲେ । ସେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥାଏ । ବ୍ରହ୍ମପୁରରେ ଜାପାନ ଦ୍ୱାରା ବୋମା ଆକ୍ରମଣ ହୋଇଥିଲା । ବିମାନ ଆକ୍ରମଣରୁ ରକ୍ଷା ପାଇବା ପାଇଁ ସିଭିଲ୍ ଡ଼ିଫେନ୍ସ ସର୍ଭିସ୍ ନାମରେ ଏକ ସଂସ୍ଥା ବ୍ରହ୍ମପୁରରେ ଆରମ୍ଭ ହୋଇଥିଲା । ୧୯୪୪ ଜୁଲାଇରେ ଏଥିରେ ମୁଁ ଯୋଗ ଦେଲି । କଟକରେ କିଛି ଦିନ ଟ୍ରେନିଙ୍ଗ ନେବାକୁ ହୋଇଥିଲା । ୧୯୪୫ ଫେବୃୟାରୀ ମାସରେ ଏହି ସଂସ୍ଥାଟି ଭାଙ୍ଗିଗଲା । ତାପରେ ମତେ ଓଡ଼ିଶାର ସପ୍ଲାଇ ବିଭାଗରେ ଆସିଷ୍ଟାଣ୍ଟ ଇନ୍‌ସପେକ୍ଟର ଭାବେ ଚାକିରି ମିଳିଲା । ଏହି ବିଭାଗରେ ବାଲେଶ୍ୱର ଜିଲ୍ଲାରେ ମୁଁ କିଛି ଦିନ କାମ କରିଥିଲି । ତା ୨୭.୭.୧୯୪୫ ରେ ଚାକିରିରୁ ଇସ୍ତଫା ଦେଇ ବ୍ରହ୍ମପୁର ଆସି ଖଲିକୋଟ କଲେଜରେ ଆଇ.ଏ. କ୍ଲାସରେ ନାମ ଲେଖାଇଥିଲି ।

୧୯୪୩ ଏପ୍ରେଲ ଠାରୁ ୧୯୪୫ ଜୁଲାଇ ପର୍ଯ୍ୟନ୍ତ ମୋର ଦୁଇଟି ଶିକ୍ଷା ବର୍ଷ ନଷ୍ଟ ହୋଇଥିଲା । ଆଗରୁ ସପ୍ତମରେ ଦୁଇବର୍ଷ ପଢ଼ିବା ହେତୁ ବର୍ଷେ ନଷ୍ଟ ହୋଇ ଥିଲା । ଚାକିରି ପାଇଥିଲେ ସୁଦ୍ଧା କଲେଜ୍‌ରେ ପଢ଼ିବା ପାଇଁ ପ୍ରବଳ ଇଛା ଥାଏ । ତେଣୁ ବାଲେଶ୍ୱରରେ ଚାକିରି କରୁଥିବା ବେଳେ ଚାକିରିରୁ ଇସ୍ତଫା ଦେବା ପାଇଁ ଦରଖାସ୍ତ କରିଥିଲି । କିନ୍ତୁ ଇସ୍ତଫା ଗ୍ରହଣ ହୋଇ ନଥାଏ । ହଠାତ୍ ଦିନେ ଗୋଟିଏ ସୁଯୋଗ ଆସି ପହଞ୍ଚିଲା ।

ବାଲେଶ୍ୱରରେ ଟୁର୍ କରୁଥିବା ବେଳେ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ସାଙ୍ଗରେ ମୋର ସାକ୍ଷାତ ହେଲା । ସେ ବ୍ୟକ୍ତି ଜଣକ ଶିକ୍ଷିତ ଓ ନେତୃସ୍ଥାନୀୟ । ବୋଧ ହୁଏ ସ୍ୱାଧୀନତା ଆନ୍ଦୋଳନରେ ଜଡ଼ିତ ଥବା କୌଣସି ଗୁପ୍ତ ସଂଗଠନ ସହିତ ତାଙ୍କର ଯୋଗାଯୋଗ ଥିଲା ।ସେ ବିପ୍ଲବ ଚିନ୍ତାଧାରାର ବ୍ୟକ୍ତିଥିଲେ । ସେ ଜଣେ ଆୟୁର୍ବେଦ ଚିକିତ୍ସକ ମଧ ଥିଲେ । ନିଜେ ପ୍ରସ୍ତୁତ କରିଥିବା ଆୟୁର୍ବେଦ ଔଷଧ ବିକ୍ରି ଓ ପ୍ରଚାର ପାଇଁ ସେ ଓଡ଼ିଶା ସାରା ଟୁର୍ କରୁଥିଲେ । କଟକ ସହରରେ ତାଙ୍କର ଘର ଥିଲା । ସେ ମୋ ସହିତ କଥାବାର୍ତ୍ତା କରି ମୋ ବିଷୟ ସବୁ ବୁଝିନେଲେ । ସେ ମୋର ଇସ୍ତାଫା ଯେପରି ଗ୍ରହଣ ହୁଏ ତାହା କରିବେ ଏବଂ ପଢ଼ାପଢ଼ିରେ ଆର୍ଥିକ ସାହାଯ୍ୟ କରିବେ ବୋଲି ପ୍ରତିଶୃତି ଦେଲେ । କଟକ ଯାଇଁ ମୋର

ଇସ୍ତଫା ଗ୍ରହଣ ହୋଇଛି ବୋଲି ସରକାରଙ୍କ ଠାରୁ ଟେଲିଗ୍ରାମ୍ ପଠାଇବା ବ୍ୟବସ୍ଥା କରିଥିଲେ । ବାଲେଶ୍ୱରରୁ ଇସ୍ତଫା ଦେଇ ମୁଁ ପ୍ରଥମେ କଟକ ଯାଇ ତାଙ୍କୁ ଦେଖାକଲି । ତାଙ୍କ ଘରେ ରହି କଟକରେ ପଢ଼ିବା ପାଇଁ ସେ ମୋତେ କହିଲେ । ମୁଁ ମନାକଲି । ବ୍ରହ୍ମପୁର ଆସି ଖଲିକୋଟ କଲେଜ୍‌ରେ ନାମ ଲେଖାଇଲି । ତାଙ୍କର ଉଦ୍ଦେଶ୍ୟ ଥିଲା ମୁଁ ତାଙ୍କର ଦତ୍ତ ପୁତ୍ର ହୋଇ ତାଙ୍କର ବ୍ୟବସାୟରେ ସହାଯ୍ୟ କରିବି । ସେଥିରେ ମୁଁ ରାଜି ହେଲି ନାହିଁ । ବ୍ରହ୍ମପୁର କଲେଜରେ ଚାରିବର୍ଷ ପଢ଼ିବା ସମୟରେ ସେ ବ୍ରହ୍ମପୁର ଆସନ୍ତି, ଆମ ଗାଁ ଓ ମୋର ଶ୍ୱଶୁର ଘରକୁ ଯାଇ ସମସ୍ତଙ୍କୁ ପ୍ରଭାବିତ କରନ୍ତି । ଶେଷରେ ଥରେ କଟକରେ ତାଙ୍କର ବାସଭବନକୁ ଡ଼କାଇ ଧମକ ମଧ ଦେଇଥିଲେ । ମୋର ଦୁର୍ବଳ ମୁହୂର୍ତ୍ତ ଦେଖି ମୋଠାରୁ କିଛି ଡ଼କୁମେଣ୍ଟ ଦସ୍ତଖତ କରି ନେଇଯାଇଥିଲେ । ତାରି ବଳରେ ମୋ ବିରୁଦ୍ଧରେ ବ୍ରିଚ୍ ଅଫ୍‌ଟ୍ରଷ୍ଟ ମକଦ୍ଦମା କରିବେ ବୋଲି ମଧ ଧମକ ଦେଇଥିଲେ । କିନ୍ତୁ ତାଙ୍କର କଥା ମାନିବାକୁ ମୁଁ ପ୍ରସ୍ତୁତ ନଥିଲି । ମୁଁ ପଢ଼ାପଢ଼ି ଶେଷ କରି ଚାକିରି କଲା ପରେ ମଧ ସେ ମୋ ଠାରୁ ଆଶା ଛାଡ଼ି ନ ଥିଲେ । ବରାବର ଚିଠି ଲେଖୁଥିଲେ । ତାଙ୍କର ପ୍ରଥମ ସ୍ତ୍ରୀର ମୃତ୍ୟୁ ହୋଇଥିଲା । କିଛି ସନ୍ତାନ ନ ଥିଲା । ସେଦ୍ୱିତୀୟ ଥର ବିବାହ କରିଥିଲେ । କିଛି ଦିନ ପରେ ତାଙ୍କର ସନ୍ତାନ ହେଲା । ସନ୍ତାନ ହେବାର ଅଳ୍ପ ଦିନ ପରେ ତାଙ୍କର ମୃତ୍ୟୁ ହୋଇଥିଲା ।

ସେଯଦି ଚେଷ୍ଟା କରି ନଥାନ୍ତେ ତେବେ ଚାକିରିରୁ ମୋର ଇସ୍ତଫା ଗ୍ରହଣ ହୋଇଥାନ୍ତା କି ନାହିଁ ସେ କଥା ମୁଁ ଜାଣି ନାହିଁ । ଚାକିରିରୁ ଇସ୍ତାଫା ହୋଇନଥିଲେ କଲେଜରେ ପାଠ ପଢ଼ିପାରି ନ ଥାନ୍ତି । ସେତେବେଳେ ଚାକିରୀରୁ ଇସ୍ତାଫା ଗ୍ରହଣ କରାଇ ନେବା ମୋ ପକ୍ଷରେ କଷ୍ଟକର ଥିଲା । ତେଣୁ ତାଙ୍କ ଠାରେ ମୁଁ ଚିର ଋଣି । ଦୀର୍ଘକାଳ ବ୍ୟବଧାନ ପରେ ତାଙ୍କର ବିଧବା ସ୍ତ୍ରୀ ଓ ତାଙ୍କର ପୁଅଙ୍କ ସହିତ କଟକରେ ତାଙ୍କ ବାସଭବନକୁ ଯାଇ ଦେଖା କରିଛି । ମୁଁ ପରିଚୟ ଦେବାରୁ ତାଙ୍କର ବିଧବା ସ୍ତ୍ରୀ ଚିହ୍ନି ପାରିଲେ । ମୋ ପ୍ରତି ତାଙ୍କର ଉପକାର ମୁଁ କେବେ ଭୁଲି ପରିବି ନାହିଁ ।

୧୯୪୯ ମାର୍ଚ୍ଚରେ ଖଲିକୋଟ କଲେଜରୁ ମୁଁ ବି.ଏ. ପାସ କଲି । ମୋ ସହିତ ଆମ ଗାଁର ଉଦୟନାଥ ରାଉଳ ଏବଂ ଏ.ଜଗନ୍ନାଥ ମଧ ବି.ଏ. ପାସ୍ କରିଥିଲେ । ଆମେ ତିନି ଜଣ କୁକୁଡ଼ାଖଣ୍ଡିର ପ୍ରଥମ ଗ୍ରାଜୁଏଟ୍ ।

୧୯୪୯ ଜୁଲାଇ ୧୮ ତାରିଖରେ ପୁରୀ ଡ଼େପୁଟି ଏକାଉଣ୍ଟେଣ୍ଟ ଜେନେରାଲ୍ ଅଫିସ୍‌ରେ ଯୋଗ ଦେଲି । ପୁରୀରେ ପ୍ରାୟ ସାତ ବର୍ଷ ରହିଲା ପରେ ତିନିବର୍ଷ ଡ଼େପୁଟେସନ୍‌ରେ କଟକରେ ରହିଥିଲି । ତା ପରେ ଭୁବନେଶ୍ୱର ଏକାଉଣ୍ଟେଣ୍ଟ ଜେନେରାଲ ଅଫିସରେ ଚାକିରି କରି ୧୯୮୩ରେ ଅବସର ନେଇଥିଲି ।

ଚାକିରିରେ ଥିବା ସମୟରେ ମଧ ଏମ୍.ଏ. ପଢ଼ିବାର ଅଭିଳାଷ ମୁଁ ଛାଡ଼ିପାରି ନ ଥିଲି । ଚାକିରିରେ ଥିଲା ବେଳେ ଘରୋଇ ଭାବେ ପରୀକ୍ଷା ଦେଇ ଏମ୍.ଏ. ପାସ୍ କରିଥିଲି ।

# କୁକୁଡ଼ାଖଣ୍ଡିରେ ପାଠାଗାର ପ୍ରତିଷ୍ଠା

କଲେଜରେ ପଢ଼ିଲା ବେଳେ ଛୁଟିଦିନମାନଙ୍କରେ ଗାଁକୁ ଯାଏ । ସେତେବେଳେ କୁକୁଡ଼ାଖଣ୍ଡିର ଅନ୍ୟ ଦୁଇଜଣ ମଧ କଲେଜରେ ପଢୁଥିଲେ । ସେମାନେ ହେଲେ ଉଦୟ ନାଥ ରାଉଳ ଏବଂ ଏ. ଜଗନ୍ନାଥ । ଆମେ ତିନି ଜଣ ଗାଁରେ ଗୋଟିଏ ପାଠାଗାର ସ୍ଥାପନ କରିଥିଲୁ । ପାଠାଗାରର ନାମ ଥିଲା "ଯୁଗଜ୍ୟୋତି" ପାଠାଗାର । ଗାଁର ଏବଂ ଆଖ ପାଖ ଗାଁ ଲୋକଙ୍କ ପାଖକୁ ଯାଇ ଚାନ୍ଦା ଆଦାୟ କରି ଏବଂ ଯିଏ ଯାହା ପୁସ୍ତକ ଦେଲା ତାହା ସଂଗ୍ରହ କରି ପାଠାଗାରଟିଏ ପ୍ରତିଷ୍ଠା କରିଥିଲୁ । ସେହି ସମୟରେ ଓଡ଼ିଶାରେ ଯେତେ ସାହିତ୍ୟ ପତ୍ରିକା ପ୍ରକାଶ ପାଉଥିଲା ସେ ସବୁ ପାଠାଗାରକୁ ଆସୁଥିଲା ।ଦୈନିକ ଖବର କାଗଜ ଗୋଟିଏ ମଧ ଆସୁଥିଲା । ଗାଁର ଲୋକଙ୍କ ଦ୍ୱରା ଏହା ଆଦୃତ ହୋଇଥିଲା

ପାଠାଗାରଟି କେତେବର୍ଷ ସକ୍ରିୟ ଥିଲା ।ତାପରେ କ୍ରମେ ଏଥିପ୍ରତି ଉତ୍ସାହ କମିଗଲା । ଆମେ ତିନିଜଣ ଚାକିରି କରିବା ହେତୁ ଗାଁ ବାହାରେ ରହିଲୁ । କିଛି ଦିନ ପରେ ପାଠାଗାରର ପୁସ୍ତକ ଓ ପୁରୁଣା ପତ୍ରିକା ସବୁ ସ୍ଥାନୀୟ ହାଇସ୍କୁଲର ପାଠାଗାରକୁ ସ୍ଥାନାନ୍ତରିତ କରାଯାଇଥିଲା କିଛି ଦିନ ପରେ ପାଠାଗାରର ଦାୟିତ୍ୱ ଗ୍ରାମପଞ୍ଚାୟତକୁ ଦିଆଯାଇଥିଲା ।

ବର୍ତ୍ତମାନ ଗାଁରେ ପାଠାଗାର ପ୍ରତି କାହାର ଶ୍ରଦ୍ଧା ନାହିଁ । ଅଧିକାଂଶ ଲୋକେ ପଢ଼ାପଢ଼ିରେ ସମୟ ନକଟାଇ ଦୂରଦର୍ଶନ ଦେଖିବାରେ ସମୟ କାଟୁଛନ୍ତି । ବିଦ୍ୟାର୍ଥୀମାନଙ୍କର ମଧ ବିଭିନ୍ନ ପୁସ୍ତକ ଅଧ୍ୟୟନ କରିବା ଶ୍ରଦ୍ଧା ନାହିଁ । ନୋଟ୍ ବହିରୁ ପଢ଼ି ପରୀକ୍ଷାରେ ପାସ୍ କରିବା ମନୋଭାବ ବେଶୀ । ଦୂରଦର୍ଶନରେ ସିନେମା ଓ ମନୋରଞ୍ଜନ କାର୍ଯ୍ୟକ୍ରମ ଦେଖିବା ପାଇଁ ଲୋକେ ଆଗ୍ରହାନ୍ୱିତ ।

# ଚାକିରି

ପୁରୀର ଡେ଼ପୁଟି ଏକାଉଣ୍ଟେଣ୍ଟ ଜେନେରାଲ ଅଫିସରେ ମତେ ଚାକିରି ମିଳିବାରୁ ନନା ଓ ସମସ୍ତେ ଅତ୍ୟନ୍ତ ଖୁସି ହେଲେ । ଚାକିରି ଓ ଜଗନ୍ନାଥଙ୍କ ଦର୍ଶନର ସୁଯୋଗ ଭାଗ୍ୟରେ ଥିଲେ ମିଳେ । ପ୍ରଥମେ ପୁରୀରେ କେତେଜଣ ମିଶି ମେସ୍ କରି ରହିଥିଲୁ । ମଝିରେ ମଝିରେ ସ୍ୱତନ୍ତ୍ର ଘର ଭଡ଼ା ନେଇ ମୋର ସ୍ତ୍ରୀ ସଙ୍ଗେ ମଧ ପୁରୀରେ ରହିଲି । ବିଭିନ୍ନ କାରଣରୁ ବରାବର ସ୍ତ୍ରୀ ସଙ୍ଗେ ରହିବା ସେତେବେଳେ ଉଚିତ ମନେକରୁନଥିଲି । କାରଣ ଗାଁରେ ଘରେ

ରହି ଶାଶୁ ଶ୍ୱଶୁରଙ୍କୁ ରାନ୍ଧିକରି ଦେବା ଏବଂ ଘରକାମ କରିବା ମଧ୍ୟ ପ୍ରଧାନ ଦାୟିତ୍ୱ । ପୁଣି ଆର୍ଥିକ ଦୃଷ୍ଟିରୁ ମଧ୍ୟ ସ୍ତ୍ରୀ ସଙ୍ଗେ ଘର ଭଡ଼ାନେଇ ରହିଲେ ଦରମା ସବୁ ବ୍ୟୟ ହେବାର ସମ୍ଭାବନା ଏବଂ ଟଙ୍କା ବଳକା କରି ଘରକୁ ପଠାଇ ହେବ ନାହିଁ । ଚାକିରି କରିବା ପରେ ଯଥା ସମ୍ଭବ ଟଙ୍କା ବଳକା କରି ଘରକୁ ପଠାଇଲେ ପାଠ ପଢ଼ା ଋଣ ସୁଝିବା ଦାୟିତ୍ୱ ମଧ୍ୟ ଥିଲା ।

୧୯୪୯ରୁ ପୁରୀରେ ପ୍ରାୟ ସାତ ବର୍ଷ ରହିଲା ପରେ ୧୯୫୬ ଅଗଷ୍ଟ ମାସରୁ ମୁଁ କଟକ ଓଡ଼ିଶା ସରକାରଙ୍କ ସ୍ପେସାଲ ରିଲିଫ ଡ଼ିପାର୍ଟମେଣ୍ଟକୁ ଡ଼େପୁଟେସନ୍‌ରେ ଯାଇ ସେଠାରେ ଜୁଲାଇ ୧୯୫୯ ପର୍ଯ୍ୟନ୍ତ ଥିଲି । କଟକରେ ଥିଲାବେଳେ ଭଡ଼ାଘର ନେଇ କେତେ ଦିନ ମୋର ସ୍ତ୍ରୀ ସାଙ୍ଗରେ ଥିଲି । କେତେଦିନ ହୋଟେଲ ଓ ଲଜ୍‌ରେ ମଧ୍ୟ ରହିଥିଲି ।

୧୯୫୯ରେ ଡ଼େପୁଟେସନ୍‌ରୁ ଫେରି ଭୁବନେଶ୍ୱର ଏକାଉଣ୍ଟେଣ୍ଟ ଜେନେରାଲ୍ ଅଫିସରେ ଯୋଗ ଦେଲି । ଡ଼େପୁଟେସନ୍‌ରେ ଥିଲା ବେଳେ ଏବଂ ଏ.ଜି. ଅଫିସରେ ଥିଲା ବେଳେ ମଝିରେ ମଝିରେ ଟୁର୍ ଯାଇ ଓଡ଼ିଶା ସାରା ବୁଲି ଦେଖିବାର ସୁଯୋଗ ମିଳିଛି । ଓଡ଼ିଶାର ପ୍ରତ୍ୟେକ ଜିଲ୍ଲା ଏବଂ ପ୍ରାୟ ସବୁ ଗଡ଼ଜାତ ଟୁର୍‌ରେ ଯାଇଛି ।

ଏ.ଜି. ଅଫିସରେ ଏକାଉଣ୍ଟସ୍ ପରୀକ୍ଷା ପାସ୍ ନ କଲେ ପ୍ରମୋସନ୍ ନାହିଁ । ମୁଁ ଏହି ପରିକ୍ଷାରେ ପାସ୍ କରିପାରି ନ ଥିଲି । ଏହାର ଅନେକ କାରଣ ଥିଲା । ପୁସ୍ତକ ପଢ଼ିବା ମୋର ରୁଚି । କିନ୍ତୁ ଏକାଉଣ୍ଟସ୍ ପୁସ୍ତକ ପଢ଼ିବା ପାଇଁ ରୁଚି ନଥିଲା । ମୋର ଜାତକ ଅନୁସାରେ ଚାକିରିରେ ପ୍ରମୋସନ୍ ପାଇବା ପାଇଁ ଅନୁକୂଳ ଗ୍ରହଯୋଗ ନାହିଁ । ମୋର କର୍ମାଧିପତି ମଙ୍ଗଳ ଅଷ୍ଟମ ଦୁସ୍ଥାନରେ । ତେଣୁ ପ୍ରମୋସନ୍ ସମ୍ଭବ ହେଲା ନାହିଁ । କିନ୍ତୁ ଚାକିରିରେ କୁଶଳତା ଯୋଗୁ ଉପରିସ୍ଥ ଅଧିକାରୀମାନେ ମତେ ଭଲ ପାଉଥିଲେ ଏବଂ କୌଣସି ଦାୟିତ୍ୱପୂର୍ଣ୍ଣ କାମ କରିବା ଦରକାର ହେଲେ ମତେ ଟଣାଟଣି କରି ସେହି ଦାୟିତ୍ୱ ଦେଉଥିଲେ । ତେଣୁ ମୋ ଉପରେ ସବୁବେଳେ ଅଧିକ ଦାୟିତ୍ୱ ପଡୁଥିଲା । ସଚ୍ଚୋଟ ଭାବେ ପରିଶ୍ରମ କରି କାମ କରିବା ପ୍ରବୃତ୍ତି ଥିଲା ।

ଚାକିରିରେ ଥିବା ବେଳେ ମଧ୍ୟ ଏମ୍.ଏ. ପଢ଼ିବା ପାଇଁ ପ୍ରବଳ ଇଚ୍ଛା ଥାଏ । ଯେକୌଣସି ପ୍ରକାରେ ଏମ୍.ଏ. ପଢ଼ିବା ପାଇଁ ଚେଷ୍ଟା କରୁଥାଏ । ସେତେବେଳେ ଘରୋଇ ଭାବେ ଏମ୍.ଏ. ପରୀକ୍ଷା ଦେବା ନିୟମ ନଥିଲା । କେବଳ ଶିକ୍ଷା ବିଭାଗର ଲୋକେ ହିଁ ଘରୋଇ ଭାବେ ପରୀକ୍ଷା ଦେଉଥିଲେ । ନାଗପୁର ୟୁନିଭରସିଟି ଏବଂ ନେପାଳର ତ୍ରିଭୁବନ ୟୁନିଭରସିଟିରେ ଯେକୌଣସି ବ୍ୟକ୍ତି ଘରୋଇ ଭାବରେ ପରୀକ୍ଷା ଦେବା ବ୍ୟବସ୍ଥା ଥିବା ଖବର କାଗଜରୁ ପଢି ସେହି ୟୁନିଭରସିଟିକୁ ଲେଖା ଲେଖିକରି ସିଲାବସ୍ ମଗାଇ ଥିଲି ।

ଇତିହାସରେ ଏମ୍.ଏ. କରିବାର ଇଛା ଥିଲା । ତେଣୁ ଇତିହାସ ପୁସ୍ତକ ମଗାଇ ପଢ଼ାପଢ଼ି କରୁଥିଲି । ଏ ଭିତରେ ଉତ୍କଳ ୟୁନିଭରସିଟିରେ ପବ୍ଲିକ ଏଡ଼ମିନିଷ୍ଟ୍ରେସନ୍‌ରେ ଏମ୍.ଏ . ପରୀକ୍ଷା ଯେ କୌଣସି ଚାକିରିଆ ଦେଇପାରିବ ବୋଲି ସ୍ଥିର ହେଲା । ଅଫିସରୁ ଅନୁମତି ନେଇ ପବ୍ଲିକ୍ ଏଡ଼ମିନିଷ୍ଟ୍ରେସନ୍ ପରୀକ୍ଷାରେ ୧୯୭୦ ନଭେମ୍ବର ମାସରେ ଦ୍ୱିତୀୟ ଶ୍ରେଣୀ ନମ୍ବର ରଖି ପାସ୍ କଲି । ବି.ଏ. ପାସ୍ କରିବାର ପ୍ରାୟ ଦୀର୍ଘ ୨୦ବର୍ଷ ପରେ ଏମ୍.ଏ. ପାସ୍ କଲି । ମୋର ଅଭିଳାଷ ପୂର୍ଣ୍ଣ ହୋଇଥିଲା । ଅବଶ୍ୟ ମୋର ଚାକିରିଦୃଷ୍ଟିରୁ ଏମ୍.ଏ. ପାସ୍ କିଛି ଲାଭଜନକ ନ ଥିଲା । ଆଗରୁ ପାସ୍ କରିଥିଲେ ଅଧ୍ୟାପକ ଚାକିରି କରିବାର ମୋର ଇଛା ଥିଲା ।

ହାଇସ୍କୁଲରେ ପଢିବା ସମୟରୁ ହିଁ ପାଠ୍ୟପୁସ୍ତକ ଛଡ଼ା ଅନ୍ୟାନ୍ୟ ବହି ପଢ଼ିବା ମୋର ରୁଚି ଥିଲା ।ମୋର ନନା ଏହି ପ୍ରେରଣା ଦେଇଥିଲେ । ସେ ମତେ ବରାବର ପଚାରୁଥିଲେ ଯେ ମୁଁ ପାଠାଗାରରୁ ଅନ୍ୟାନ୍ୟ ବହି ନେଇ ପଢୁଛି ନା ନାହିଁ । ପୁସ୍ତକଟି ପାଠ କଲା ପରେ ସେଥିରେ ଥିବା ପ୍ରଧାନ ପ୍ରଧାନ ବିଷୟ ଲେଖି ରଖିବାକୁ ମଧ୍ୟ ସେ କହୁଥିଲେ । ତେଣୁ ପଢ଼ାପଢ଼ିରେ ମୋର ରୁଚି ଥିଲା । ସାଧାରଣତଃ ମୁଁ ଧର୍ମ,ଦର୍ଶନ,ଇତିହାସ, ଜୀବନୀ ଆଦି ପୁସ୍ତକ ପଢ଼େ । ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ,ଆଲୋଚନା, ସମାଲୋଚନା ପଢ଼ିବାକୁ ଭଲ ଲାଗେ । ପ୍ରଧାନ ପ୍ରଧାନ ଗଳ୍ପ ଓ ଉପନ୍ୟାସ ପଢୁଥାଏ । ହାଇସ୍କୁଲରେ ପଢ଼ିବା ସମୟରୁ ହିଁ ମୁଁ ରାମାୟଣ, ମହାଭାରତ,ଭାଗବତ ଆଦି କେତେ ପୁରାଣ ପଢ଼ିସାରିଥିଲି ।

ଚାକିରିରୁ ଅବସର ପରେ ମଧ୍ୟ ମୋର ପଢ଼ାପଢ଼ି ଅଧିକ ହୋଇଯାଇଛି । ବିଦ୍ୟାର୍ଥୀ ଥିଲାବେଳେ ମୁଁ ଯେତେ ପଢୁଥିଲି ତା ଠାରୁ ଅଧିକ ସମୟ ମୋର ପଢ଼ାପଢ଼ି ଓ ଲେଖାଲେଖିରେ କଟାଉଛି । କାରଣ ଜ୍ୟୋତିଷ ଭଳି ଅଗାଧ ଶାସ୍ତ୍ର ଆୟତ୍ତ କରିବା ଏବଂ ସେହି ବିଷୟରେ ଲେଖାଲେଖି କରିବା ପାଇଁ ପଢ଼ାପଢ଼ି ଆବିକାର୍ଯ୍ୟ ହୋଇଛି ।

# ମୋ ପରିବାର

ମୋ ପରିବାରରେ ମୁଁ ବଡ ଭାଇ । ମଝିଆ ଭାଇ ମଦନମୋହନ ପଣ୍ଡା , ଆଇ.ଏ. ପାସ୍ କରି ଶିକ୍ଷକ ଟ୍ରେନିଙ୍ଗ ପାଇ ଶିକ୍ଷକତା କରି ଅବସର ନେଇ ଗାଁରେ ଅଛି । ଜଣେ ଦକ୍ଷ ଶିକ୍ଷକ ଭାବରେ ସେ ସୁନାମ ଅର୍ଜନ କରିଥିଲେ । ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ (ଏନ୍.ସି.ସି.)ରେ ସେ ଦୀର୍ଘ ସତର ବର୍ଷ ଶିକ୍ଷା ଦେଇ ଚିଫ୍ ଅଫିସର୍ ପଦ ପର୍ଯ୍ୟନ୍ତ ଉନ୍ନତି ପ୍ରାପ୍ତ କରିଥିଲେ । ସେ ସକଳ କାର୍ଯ୍ୟ ଶୃଙ୍ଖଳିତ ଓ ନିୟମିତ ଭାବେ ସଂପନ୍ନ କରୁଥିଲେ । ସେ ସ୍ପଷ୍ଟବାଦୀ ଓ ସ୍ୱାଭୀମାନୀ ଅଟନ୍ତି । ଅପ୍ରିୟ ସତ୍ୟ କହିବାକୁ ପଛାନ୍ତି ନାହିଁ । ତେଣୁ

ସାଧାରଣତଃ ତାଙ୍କର ଅନେକ ଶତ୍ରୁ ହୁଅନ୍ତି । ସେ ବଦ୍ରୀନାଥ, ରାମେଶ୍ୱର, ପୁରୀ, ଗୋଦାବରୀ ଆଦି ଅନେକ ତୀର୍ଥ ସ୍ଥାନ ଭ୍ରମଣ କରିଛି । ସାନ ଭାଇ ଚୈତନ୍ୟ ପଣ୍ଡା ପୁରୀ ଗୋପବନ୍ଧୁ ଆୟୁର୍ବେଦ କଲେଜରୁ ଡ଼ି.ଏ.ଏମ୍.ଏସ୍ ପାସ କରି ଗାଁରେ ଘରୋଇ ଭାବେ ଚିକିତ୍ସା କରୁଛି । ଜଣେ ନିପୁଣ ଚିକିତ୍ସକ ଭାବରେ ସେ କୁକୁଡ଼ାଖଣ୍ଡି ଏବଂ ଆଖପାଖ ଚାରି ପାଞ୍ଚ ଖଣ୍ଡ ଗ୍ରାମରେ ଖ୍ୟାତ । ଭଉଣୀ ପୂର୍ଣ୍ଣମାସୀ ଦେବୀ ବାହା ହୋଇ ତାର ପରିବାର ସହ ଅଛି । ଭିଣୋଇ ତହର ଗ୍ରାମରେ ଜଣେ ସ୍ୱନାମଧନ୍ୟ ହୋମିଓପାଥି ଚିକିତ୍ସକ ଥିଲେ । ଅନେକ ଗରିବ ଲୋକ ତାଙ୍କ ଚିକିତ୍ସାରେ ଉପକୃତ ହୋଇଛନ୍ତି । ପ୍ରାୟ ଦେଢ଼ ବର୍ଷ ହେଲା ତାଙ୍କର ଦେହାନ୍ତ ହୋଇଯାଇଛି । ସବୁ ଭାଇ ଭଉଣୀଙ୍କର ପୁଅ, ଝିଅ ଅର୍ଥାତ୍ ମୋର ପୁତୁରା, ଝିଆରୀ, ଭଣଜା, ଭାଣେଜୀ ମଧ୍ୟ ଅଛନ୍ତି ।

ମୋର ଶ୍ୱଶୁର ଘର ପାକିଡ଼ି ଗ୍ରାମ । ଶ୍ୱଶୁର ଗ୍ରାମର ରେଭେନ୍ୟୁ କର୍ମଚାରୀ ଅର୍ଥାତ୍ କାର୍ଜୀ ଥିଲେ । ଗୋଟିଏ ସମ୍ଭ୍ରାନ୍ତ ଓ ସୁନାମ ଥିବା ପରିବାରରେ ମୋର ବିବାହ ହୋଇଥିଲା । ସେତେବେଳର ପ୍ରଥା ଅନୁସାରେ ମୁଁ ମାଟ୍ରିକ ପାସ୍ କଲା ପରେ ବାଲ୍ୟବିବାହ ହୋଇଥିଲା । ମୋର ସ୍ତ୍ରୀ ଆମ ଘରକୁ ପ୍ରଥମେ ଆସିଲା ବେଳକୁ ତାଙ୍କର ବୟସ ୧୫ ବର୍ଷ ହୋଇଥିଲା ।

ମୋର ସ୍ତ୍ରୀ କୁନ୍ତଳା କୁମାରୀ ପଣ୍ଡାଙ୍କର ଜାତକ ନିମ୍ନରେ ଦିଆଗଲା ।

ଜନ୍ମ ୧୯୩୪ ମସିହା, ଅକ୍ଟୋବର ୧୮ ତାରିଖ ଆଶ୍ୱିନ, ଶୁକ୍ଳ, ଏକାଦଶୀ, ଗୁରୁବାର ଶେଷ ରାତ୍ରି ସମୟ ।

ଚ
କେ ୨୪/୧୧ ରାଶି
ମ
ଲଶୁ ରବୁବୃ

ବୁ ରା
ମ ଚ
ଲ ନବାଂଶ
ଶୁ ବୃ
ଶ ରକେ

କନ୍ୟା ଲଗ୍ନ, କୁମ୍ଭ ରାଶି, ଶତଭିଷା ନକ୍ଷତ୍ରରେ ଜନ୍ମ । ଜନ୍ମ ସମୟକୁ ରାହୁ ମହାଦଶା ବାକିଥିଲା ବ ୮.୩.୨୦ ଦିନ ।

| ଗ୍ରହସ୍ଫୁଟ | ରା. ଡ଼ି. ମି. | ନକ୍ଷତ୍ର | ନକ୍ଷତ୍ରାଧିପତି |
|---|---|---|---|
| ରବି | ୬. ୧. ୫୬ | ଚିତ୍ରା | ମଙ୍ଗଳ |

| | | | |
|---|---|---|---|
| ଚନ୍ଦ୍ର | ୧୦. ୧୩.୫୦ | ଶତିଭିଷା | ରାହୁ |
| ମଙ୍ଗଳ | ୪. ୭. ୩୦ | ମଘା | କେତୁ |
| ବୁଧ | ୬. ୨୫.୧ | ବିଶାଖା | ବୃହସ୍ପତି |
| ବୃହସ୍ପତି | ୬. ୮. ୪୩ | ସ୍ୱାତୀ | ରାହୁ |
| ଶୁକ୍ର | ୫. ୨୪.୬ | ଚିତ୍ରା | ମଙ୍ଗଳ |
| ଶନି | ୯. ୨୮.୩୪ | ଧନିଷ୍ଠା | ମଙ୍ଗଳ |
| ରାହୁ | ୯. ୧୩.୧୨ | ଶ୍ରବଣା | ଚନ୍ଦ୍ର |
| କେତୁ | ୩. ୧୩.୧୨ | ପୁଷ୍ୟା | ଶନି |
| ଲଗ୍ନ | ୫. ୨୧.୩୩ | ହସ୍ତା | ଚନ୍ଦ୍ର |

କନ୍ୟା ଲଗ୍ନ ବ୍ୟକ୍ତି ଧର୍ମ ପ୍ରିୟ, ପ୍ରିୟ ବାକ୍ୟାଳାପି ଏବଂ କର୍ମନିପୁଣ ହୁଅନ୍ତି । କୁମ୍ଭ ରାଶି ହେତୁ ପରିଶ୍ରମୀ, ପରୋପକାରୀ ହୁଅନ୍ତି । ଦୁଃଖ ଓ ସୁଖ ଭୋଗିବାକୁ ପଡ଼ିଥାଏ ।

ଜାତକରେ ରବି ଓ ଶୁକ୍ରଙ୍କର ନୀଚ ଭଙ୍ଗ ଯୋଗ ହେଉଛି ବୁଧ ଓ ଶୁକ୍ର ଯୋଗ କାରକ ଗ୍ରହ ଏବଂ ଭାଗ୍ୟାଧିପତି ଶୁକ୍ର ଏବଂ କର୍ମାଧିପତି ବୁଧଙ୍କର ଗୃହ ପରିବର୍ତ୍ତନ ହେତୁ ରାଜ ଯୋଗ ସୃଷ୍ଟି ହେଉଛି । ସେହିପରି ପଞ୍ଚମାଧିପତି ଶନିଙ୍କ ଦୃଷ୍ଟି କେନ୍ଦ୍ରାଧିପତି ବୃହସ୍ପତିଙ୍କୁ ଅଛି । ଏହା ଅନ୍ୟ ଏକ ରାଜଯୋଗ ସୃଷ୍ଟି କରୁଛି । ରବି ଓ ଚନ୍ଦ୍ର ବର୍ଗୋତ୍ତମ ଏହି ଶୁଭ ଯୋଗ ଫଳରେ ଜାତକ ବଳବାନ ।

ମେଳକ ବିଷୟ ବିଚାର କଲେ ଷଡ଼ାଷ୍ଟକ ଦୋଷ ଥିଲେ ସୁଦ୍ଧା ଭବନାଧିପତି ମିତ୍ର ଏବଂ ଜଣଙ୍କର ରାଶି ଅନ୍ୟଜଣଙ୍କର ଲଗ୍ନ ଥିବା ହେତୁ ଉତ୍ତମ ଦାମ୍ପତ୍ୟ ଜୀବନର ସୂଚନା ଦିଏ ।

# ଚାକିରିରୁ ଅବସର

ମୁଁ ସରକାରୀ ଚାକିରିରୁ ଅବସର ନେଲା ବେଳକୁ ମୋର ପୁଅ ଓ ଝିଅ ଉଚ୍ଚଶିକ୍ଷା ସାରି ଚାକିରି ପାଇ ଏବଂ ତାର ଅଳ୍ପଦିନ ପରେ ବାହା ହୋଇ ସନ୍ତାନ ସନ୍ତତି ସହ ସୁଖମୟ ପାରିବାରିକ ଜୀବନ ଅତିବାହିତ କରୁଛନ୍ତି । ବଡ଼ ପୁଅ ଜଣେ ଏମ୍.ବି.ବି.ଏସ୍ ଡ଼ାକ୍ତର ଏବଂ ଓଡ଼ିଶା ସରକାରରେ ଚାକିରି କରେ , ସାନ ପୁଅ କେମେଷ୍ଟ୍ରିରେ ଡ଼କ୍‌ଟେରେଟ୍ କରି ଓଡ଼ିଶା ସରକାରୀ କଲେଜରେ ଅଧ୍ୟାପକ ଅଛି । ବଡ଼ ଝିଅ ପ୍ରାଣୀ ବିଜ୍ଞାନରେ ଡ଼କ୍ଟରେଟ୍ କରି ସରକାରୀ କଲେଜରେ ଅଧ୍ୟାପିକା ଅଛି । ବଡ଼ ଜୋଇଁ କେନ୍ଦ୍ର ସରକାରଙ୍କ ଟେଲିଫୋନ୍ ବିଭାଗରେ ଇଞ୍ଜିନିୟର ଅଛନ୍ତି । ସାନ ଝିଅ ଏମ୍.ଇଡ଼ି କରି କିଛିଦିନ ଘରୋଇ କଲେଜରେ ଅଧ୍ୟାପିକା ରହି ଚାକିରି ଛାଡ଼ି ଦେଇଛି ଏବଂ ସାନ ଜୋଇଁ ପ୍ରାଣୀବିଜ୍ଞାନରେ ଡ଼କ୍ଟରେଟ୍ କରି ଅଧ୍ୟାପକ ଅଛନ୍ତି । ସମସ୍ତଙ୍କର ପୁଅ ଝିଅ ମଧ୍ୟ ଅଛନ୍ତି ।

ମୋର ବଡ଼ ପୁଅର ବ୍ରତୋପନୟନ କୁକୁଡ଼ାଖଣ୍ଡିରେ ତା ୧୩.୬.୧୯୬୬ରେ ହୋଇଥିଲା ଏବଂ ସାନ ପୁଅର ବ୍ରତୋପନୟନ ଭୁବନେଶ୍ୱରରେ ତା ୧୪.୬.୧୯୭୦ରେ ହୋଇଥିଲା । ବଡ଼ ଝିଅର ବାହାଘର ତା ୧୨.୭.୧୯୭୪ରେ, ବଡ଼ ପୁଅର ବାହାଘର ତା ୩.୨.୧୯୮୨ରେ, ସାନ ଝିଅର ବାହାଘର ତା ୨୩.୧.୧୯୭୯ ଏବଂ ସାନ ପୁଅର ବାହାଘର ତା ୪.୬.୧୯୮୭ରେ ସଂପନ୍ନ ହୋଇଥିଲା ।

ବଡ଼ ପୁଅର ଚାକିରି ତା ୩୧.୩.୧୯୮୦ରେ ଏବଂ ସାନ ପୁଅର ଚାକିରି ତା ୨୨.୧୨.୧୯୮୩ରେ ହୋଇଥିଲା ।

ବଡ଼ ପୁଅ - ଶଶିଭୂଷଣ

ସାନ ପୁଅ - ବିଭୂତି ଭୂଷଣ

ବଡ଼ ଝିଅ - ମନୋରମା

ବଡ଼ ଜୋଇଁ - ବାଳକୃଷ୍ଣ ରାଜଗୁରୁ

ସାନ ଝିଅ - ପ୍ରିୟମ୍ବଦା

ସାନ ଜୋଇଁ - ସରୋଜ କୁମାର ମିଶ୍ର

ବଡ଼ ନାତି(ବଡ଼ ପୁଅର ପୁଅ) - ଅନୁପକୁମାରର

ବ୍ରତୋପନୟନ -ତା୧୬.୨.୧୯୯୭

ସାନନାତି(ସାନ ପୁଅର ପୁଅ) -ରୋହିତର

ବ୍ରତୋପନୟନ - ତା ୨୪.୫.୨୦୦୨

ମୁଁ ଚାକିରିରୁ ଅବସର ନେଲା ବେଳକୁ ଆର୍ଥିକ ଚିନ୍ତାରୁ ସଂପୂର୍ଣ୍ଣ ରୂପେ ମୁକ୍ତ । କାର୍ଯ୍ୟକ୍ଷମ ଥିଲେ ସୁଦ୍ଧା କୌଣସି ରୋଜଗାର ପନ୍ଥା ଅବଲମ୍ବନ କରିବାର ଇଚ୍ଛା ମଧ୍ୟ କରିନାହିଁ । ପଢ଼ାପଢ଼ି ଓ ଲେଖାଲେଖିରେ ସମୟ କଟାଇ ଥାଏ । ଏଥିରେ ହିଁ ମୋର ରୁଚି ଓ ଆନନ୍ଦ । ଅନ୍ୟମାନଙ୍କ ତୁଳନାରେ ବ୍ୟାଙ୍କ୍ ବେଲେନ୍ସ୍ ନାହିଁ, ଘର ଦୋତାଲା କିମ୍ବା ମୋଜାଇକ୍ କରି ନାହିଁ । ସ୍କୁଟର ନାହିଁ । ଏହି ଚିନ୍ତାରୁ ମୁକ୍ତ । ଚାକିରି ଜୀବନରେ ଖଣ୍ଡେ ସାଇକେଲ୍ ଚଢ଼ି ସମୟ କଟାଇଛି । ଅବସର ପରେ ଏହି ସାଇକେଲଟି ମଧ୍ୟ ଛାଡ଼ି ଦେଇଛି ।

# ଭୁବନେଶ୍ୱରରେ ଘର ତିଆରି

ଚାକିରିରେ ବଦଳି ନ ଥିବାରୁ ଭୁବନେଶ୍ୱରରେ ସବୁବେଳେ ରହିବାକୁ ହେଲା । ନୂଆ ରାଜଧାନୀ ହେଉଥିବା ହେତୁ ବାସଗୃହ ପାଇଁ ସରକାର କର୍ମଚାରୀମାନଙ୍କୁ ଘର ତିଆରି ପାଇଁ ଜମି ଲିଜ୍ ଦେଉଥିଲେ । ଜାଗା ଦେବା ପାଇଁ ବିଭିନ୍ନ ସୋସାଇଟି ମଧ୍ୟ ଗଠନ ହୋଇଥାଏ । ସୋସାଇଟି ତରଫରୁ ସୁବିଧାରେ ଜାଗା ମିଳୁଥିଲା । କେନ୍ଦ୍ର ସାରକାର ମଧ୍ୟ ସୁବିଧା ସୁଧରେ ଋଣ ଦେଉଥିଲେ । ଏହି ସବୁ ସୁବିଧା ଥିବାରୁ ଭୁବନେଶ୍ୱରରେ ଖଣ୍ଡେ ଜାଗା ନେଇ ଘରଟିଏ କରିବା ପାଇଁ ଇଚ୍ଛା ହେଲା ।

୧୯୬୩ ଫେବୃୟାରୀ ୨୫ ତାରିଖ ଦିନ ଗୃହାରମ୍ଭ ପାଇଁ ଶୁଭ ଦିଆ ହୋଇଥିଲା । ପ୍ଲଟର ଅଧା ଜାଗାରେ ଯେ କୌଣସି ପ୍ରକାର ଘର ତିଆର କରି ତା ୩.୧୨,୧୯୬୫ରେ ଘର ପ୍ରତିଷ୍ଠା ହୋଇଥିଲା ଏବଂ ତା ୨୭.୧୨,୧୯୬୫ରୁ ସରକାରୀ ଘର ଛାଡ଼ି ନିଜ ଘରେ ଯାଇ ରହିଲି । ଯେଉଁମନେ ସରକାରୀ ଋଣ ନେଇଛନ୍ତି ସେମାନଙ୍କୁ ନିର୍ଦ୍ଦିଷ୍ଟ ସମୟରେ ସରକାରୀ ଘର ଛାଡ଼ିବାକୁ କୁହାଯାଇଥିଲା । ଘରଟି ସଂପୂର୍ଣ୍ଣ ତିଆର ହୋଇ ନଥିଲେ ସୁଦ୍ଧା ସରକାରୀ ଘର ଛାଡ଼ିବାକୁ ବାଧ କରାଯାଇଥିଲା । ଘର ପ୍ରତିଷ୍ଠା କରିବାକୁ ଗାଁରୁ ନନା ଓ ବୋଉ ଆସିଥିଲେ ।

ସୀମିତ ସମ୍ବଳ ବ୍ୟୟ କରି ପ୍ରଥମେ ଘରଟି ବାସଯୋଗ୍ୟ କରିଥିଲି । ଅବଶ୍ୟ ସେତେବେଳେ ସିମେଣ୍ଟ, ପଥର, ଇଟା, କାଠ, ମଜୁରୀ ସବୁ ସସ୍ତା ଥିଲା । ତଥାପି ମୋର ସ୍ୱଳ୍ପ ଦରମାରୁ ବଳକା ଏବଂ ଧାର ଉଧାର କରି ଘରଟି ତୟାର କରିଥିଲି । ଅବଶ୍ୟ କେନ୍ଦ୍ର ସରକାରଙ୍କ ଠାରୁ ମଧ୍ୟ ଋଣ ନେଇଥିଲି । ଘରଟି ତୟାର କଲା ବେଳେ ଅନେକ ଆର୍ଥିକ ଅନାଟନରେ ସମୟ କଟିଥିଲା ।

ପରେ ଘରର ସଂପ୍ରସାରଣ ହୋଇଛି । ଚାକିରିରୁ ଅବସର ନେଲା ପରେ ଖାଲିଥିବା ଅଧା ଜାଗାରେ ଘର ତୟାର ହୋଇଥିଲା । ପୁଅମାନେ ଚାକିରୀ କରିବାରୁ ସେମାନେ ମଧ୍ୟ ଆର୍ଥିକ ସାହାର୍ଯ୍ୟ ଦେଲେ । ଖାଲିଥିବା ଜାଗାରେ ଘର ୧୯୮୩ରୁ ଆରମ୍ଭ ହୋଇ ୧୯୯୧ ରେ ଶେଷ ହୋଇଥିଲା । ଦୁଇଟି ପରିବାର ରହିଲା ଭଳି ସମୁଦାୟ ପ୍ଲଟରେ ଘର ହୋଇଛି । ପୁଅମାନେ ଯେତେବେଳେ ଭୁବନେଶ୍ୱର ବାହାରେ ଚାକିରି କରୁଥିଲେ ସେତେବେଳେ ଘରର କିଛି ଅଂଶ ଭଡ଼ାରେ ଦିଆଯାଇଥିଲା ।

କିଛି ଦିନ ପରେ କଟକଣା ଉଠିଯିବାରୁ ମୁଁ ସରକାରୀ ଘର ପାଇଥିଲି । ଚାକିରିରୁ ଅବସର ପରେ ମୁଁ ନିଜ ଘରେ ରହୁଛି । ଦୁଇ ପୁଅଙ୍କର ପିଲାମାନେ ଯେତେବେଳେ

ଭୁବନେଶ୍ୱରରେ ପଢ଼ାପଢ଼ି ଆରମ୍ଭ କଲେ ସେହିଦିନଠାରୁ ମୁଁ ମୋର ଦୁଇ ପୁଅଙ୍କ ପରିବାର ସହିତ ନିଜ ଘରେ ରହୁଛି ।

କୁକୁଡ଼ାଖଣ୍ଡିରେ ମୋର ଯେଉଁ ଘରଟି ଥିଲା ତାହା ମୋର ପୁତୁରାଙ୍କୁ ବିକ୍ରି କରି ଦେଇଥିଲି ।

# ଜଗନ୍ନାଥ ମନ୍ଦିରରେ ପୂଜାରୀ

ମୋ ନନା ଜଗନ୍ନାଥ ମନ୍ଦିରରେ ପୂଜାରୀ ଥିଲେ । ତେଣୁ ମୁଁ ମଧ ଗ୍ରାମର ଅନ୍ୟାନ୍ୟ ଭାଗୁଆଳି ପୂଜାରୀଙ୍କ ପରି ମନ୍ଦିର ପାଳି କରିବାର ମୋର ଭାଗ ଓ ଅଧିକାର ଅଛି । ନନାଙ୍କର ମୃତ୍ୟୁ ପରେ ମୋର ସାନ ଭାଇ ମନ୍ଦିର ପାଳି କରୁଥିଲା । ମୁଁ ଅବସର ନେବା ପରେ ମୋରପାଳି ସମୟ ଆସିଲେ ଗାଁକୁ ଯାଇ ମନ୍ଦିର ପାଳି କଲି । ମନ୍ଦିରର ନୀତି ନିୟମ ଅନୁସାରେ ପୂଜା ଅର୍ଚ୍ଚନା କଲି । ଭୋରରୁ ଗାଧୋଇ ମନ୍ଦିର ଖୋଲିବା, ପୂଜାଅର୍ଚ୍ଚନା, ରୋଷେଇ, ଭୋଗ, ଅଭ୍ୟାଗତଙ୍କୁ ଖାଇବା ଦେବା, ସନ୍ଧ୍ୟା ଆଳତି, ପୁରାଣ ପାଠ ଇତ୍ୟାଦି ସାରି ଠାକୁରଙ୍କ ପହୁଡ଼ ପର୍ଯ୍ୟନ୍ତ ଦିନ ତମାମ ମନ୍ଦିର କାମରେ ବ୍ୟସ୍ତ ରହିବାକୁ ପଡ଼ିଥାଏ । ପର୍ବପର୍ବାଣୀ ଦିନମାନଙ୍କରେ ଅଧିକ ସମୟ କଟାଇବାକୁ ହୋଉଥାଏ । ଆଗରୁ ବ୍ରହ୍ମପୁରରେ ପଢ଼ିଲା ସମୟରେ ମଝିରେ ମଝିରେ ନନାଙ୍କ ମନ୍ଦିର କାମରେ ବେଳେବେଳେ ମିଶି କିଛି କାମ କରିଥିଲି ।ତେଣୁ ମନ୍ଦିରରେ ପୂଜା ଅର୍ଚ୍ଚନା ଆଦି ନୀତି ମୋ ପକ୍ଷରେ କିଛି ନୂଆ ନୁହେଁ । ପୂଜାପଦ୍ଧତି ସବୁ ନନାଙ୍କଠାରୁ ଶିଖି ଥିଲି ଏବଂ ଦରକାର ହେଲେ ପୁସ୍ତକ ଦେଖି ମଧ କରୁଥିଲି । ତେଣୁ ମନ୍ଦିର ନୀତି କରିବାରେ କିଛି ଅସୁବିଧା ନଥିଲା । ପରିଣତ ବୟସରେ ନିଜେ ଜଗନ୍ନାଥଙ୍କ ନୀତି କରିବାର ସୁଯୋଗ ମିଳିବାରୁ ମୁଁ ନିଜକୁ ଭାଗ୍ୟବାନ୍ ମନେ କଲି । ସମସ୍ତଙ୍କୁ ଏପରି ସୁଯୋଗ ମିଳେ ନାହିଁ । ଜଗନ୍ନାଥ ହିଁ ଆମର ସବୁ କିଛି । ତାଙ୍କର ଆଶୀର୍ବାଦ ବିନା କୌଣସି କାର୍ଯ୍ୟ ସମ୍ଭବ ନୁହେଁ ।

ମୋର ୫୮ ବର୍ଷ ବୟସରେ ଚାକିରିରୁ ଅବସର ନେଲି । ଭୁବନେଶ୍ୱରରେ ମୋରନିଜ ଘରେ ଥାଏ । ପାଳି ପଡ଼ିଲେ ଗାଁକୁ ଯାଇ ଜଗନ୍ନାଥ ମନ୍ଦିରରେ ପୂଜାକରେ । ଗାଁରେ ମନ୍ଦିରର ଭାଗୁଆଳି ପୂଜାରୀ ମଧ ଅଛନ୍ତି । ପ୍ରତି ଛଅ ମାସରେ ପନ୍ଦର ଦିନ ମୋର ପାଳି ହୁଏ । ତେଣୁ ପ୍ରତି ଛଅ ମାସରେ ଥରେ ଗାଁକୁ ଯାଏ । ଗାଁରେ ଥିବା ମୋର ନିଜ ବାସଗୃହରେ ରହି ପାଳିକରେ ।ମୋ ସହିତ ମୋର ସ୍ତ୍ରୀ ମଧ ଯାଇଥାଏ । ଏପରି ଭାବରେ ଅବସର ନେବାର ଦଶ ବର୍ଷ ପର୍ଯ୍ୟନ୍ତ ମନ୍ଦିର ପାଳି କରିଥିଲି । ନିଜେ ରାନ୍ଧି, ଭୋଗ କରି ଅଭ୍ୟାଗତ ଦେବା ଇତ୍ୟାଦି କାମ କ୍ରମେ କଷ୍ଟକର ହେଲା । ତେଣୁ ଏହି ପୂଜାରୀ କାମଛାଡ଼ି ଦେଲି । ମୋର ଭାଇ ମୋର ପାଳି କରୁଛି ।

# ତୀର୍ଥଯାତ୍ରା

ପ୍ରତ୍ୟେକ ହିନ୍ଦୁଙ୍କ ପକ୍ଷରେ ତୀର୍ଥଯାତ୍ରା ଏବଂ ତୀର୍ଥରେ ପିତୃପୁରୁଷଙ୍କ ପିଣ୍ଡଦାନ କର୍ତ୍ତବ୍ୟ । ଆମର ସଂସ୍କୃତିର ଏହା ଏକ ମହତ୍ ପରମ୍ପରା । ଏହି ଦାୟିତ୍ୱ ସଂପାଦନ କରିବା ପାଇଁ ମୁଁ ଚାରିଧାମ ଓ ଅନ୍ୟାନ୍ୟ ତୀର୍ଥଯାତ୍ରା କରିଥିଲି । ଆଦି ଶଙ୍କରାଚାର୍ଯ୍ୟ ଏହି ମହତ୍ ଉଦ୍ଦେଶ ରଖି ଭାରତର ଚାରି ଦିଗରେ ଚାରୋଟି ତୀର୍ଥସ୍ଥାନ ସ୍ଥାପନ କରିଥିଲେ । ଏହା ଦ୍ୱାରା ଭାରତର ଏକତା ଓ ସଂସ୍କୃତି ଦୃଢ଼ଥିଲା । ସେ ପୂର୍ବ ଦିଗରେ ପୁରୀରେ ଜଗନ୍ନାଥ ଧାମରେ ଗୋବର୍ଦ୍ଧନ ପୀଠ, ଉତ୍ତରରେ ହିମାଳୟରେ ବଦ୍ରିନାଥଠାରେ ବଦ୍ରିନାରାୟଣରେ ଜ୍ୟୋତି ପୀଠ, ପଶ୍ଚିମରେ ଦ୍ୱାରକାରେ ଦ୍ୱାରକାନାଥ ବା ଶାରଦା ପୀଠ ଏବଂ ଦକ୍ଷିଣରେ ରାମେଶ୍ୱରଠାରେ ରାମେଶ୍ୱର ମନ୍ଦିର ସ୍ଥାପନ କରିଥିଲେ ।

୧୯୭୬ ଜାନୁୟାରୀ ୧୫ ତାରିଖ ଦିନ ଦକ୍ଷିଣ ଭାରତର ରାମେଶ୍ୱର ଭ୍ରମଣ ଉଦ୍ଦେଶରେ ମୁଁ ଓ ମୋର ସ୍ତ୍ରୀ ବାହାରିଲୁ । ପ୍ରଥମେ କେରଳରେ ଥିବା ଆଦି ଶଙ୍କରାଚାର୍ଯ୍ୟଙ୍କର ଜନ୍ମ ସ୍ଥାନ କାଲାଡ଼ି ଦେଖିବାର ଇଚ୍ଛା ହେଲା । ବାଟରେ ମାନ୍ଦ୍ରାଜ ସହରରେ ଦିନେ ରହିଲୁ । ମାନ୍ଦ୍ରାଜରୁ କେରଳରେ ଆଲଓ୍ୱାରରେ ପହଞ୍ଚି ସେଠାରୁ ବସ୍‌ରେ କାଲାଡ଼ି ଗଲୁ । ସେଠାରେ ଶଙ୍କରାଚାର୍ଯ୍ୟଙ୍କ ଜନ୍ମସ୍ଥାନ, ଶାରଦା ଦେବୀଙ୍କ ମନ୍ଦିର, ଶ୍ରୀକୃଷ୍ଣଙ୍କ ମନ୍ଦିର, ଶଙ୍କରଙ୍କ ସମାଧୀ ଦେଖି ପ୍ୟାରିଆର ନଦୀକୁ ଯାଇ ମୁଣ୍ଡରେ ଜଳ ଛିଞ୍ଚିଥିଲୁ । ଶଙ୍କରାଚାର୍ଯ୍ୟ ତାଙ୍କର ମାତାଙ୍କର ଅନୁରୋଧରେ ଏହି ନଦୀର ଗତି ବଦଳାଇ ଦେଇଥିଲେ ବୋଲି କିମ୍ବଦନ୍ତୀ ଅଛି । ତାପରେ ଏରନାକୁଲମ୍ ଯାଇ ସେଠାରୁ କେରଳର ରାଜଧାନୀ ତ୍ରିଭେନ୍ଦ୍ରମ୍ ବସ୍‌ରେ ଗଲୁ । ବାଟରେ କୋଚିନ ବନ୍ଦର, ଆରବ ସାଗର ଉପକୂଳ ରାସ୍ତାକଡ଼ରେ ସୁନ୍ଦର ନଡ଼ିଆ ବଗିଚାର ପ୍ରାକୃତିକ ଦୃଶ୍ୟ ଦେଖିବାକୁ ପାଇଲୁ । ୧୯.୧.୧୯୭୬ରେ ତ୍ରିଭେନ୍ଦ୍ରମରେ ରହି ଅନନ୍ତ ପଦ୍ମନାଭ ମନ୍ଦିର, ଏବଂ ତ୍ରିଭେନ୍ଦ୍ରମ୍ ସହର ବୁଲି ଦେଖିଲୁ । ସେଠାରୁ ବସ୍‌ରେ କନ୍ୟାକୁମାରୀ ଗଲୁ । ୨୧.୧.୧୯୭୬ରେ କନ୍ୟାକୁମାରୀରେ ଦିନେ ରହିଲୁ । ସେଠାରୁ ସ୍ୱାମୀ ବିବେକାନନ୍ଦ ଶୀଳା ସ୍ମାରକୀ(ରକ୍ ମେମୋରିଆଲ୍) କୁ ଲଞ୍ଚ ସାହାଯ୍ୟରେ ସମୁଦ୍ରପାର ହୋଇ ଗଲୁ । ବିବେକାନନ୍ଦ ରକ୍ ମେମୋରିଆଲ୍ ଗୋଟିଏ ଛୋଟିଆ ଦ୍ୱୀପ ଅର୍ଥାତ୍ ବିରାଟ ପଥର ଚଟାଣର ଚତୁର୍ଦ୍ଦିଗରେ ସମୁଦ୍ର । ଏଠାରେ ବସି ପ୍ରାର୍ଥନା କଲେ ଯେ କୌଣସି ବ୍ୟକ୍ତି କିଛି ପ୍ରେରଣା ପାଇ ପାରିବ । ଏଠାରେ ଗୋଟିଏ ପ୍ରାର୍ଥନା ଘର ମଧ୍ୟ ଅଛି । ଏହି ଶୀଳା ଉପରେ ସ୍ୱାମୀ ବିବେକାନନ୍ଦ ଧ୍ୟାନରେ ବସି ଆମେରିକା ଯିବା ପାଇଁ ତାଙ୍କର ଗୁରୁ ରାମକୃଷ୍ଣ ପରମହଂସଙ୍କର ନିର୍ଦ୍ଦେଶ ପାଇଥିଲେ । ଏହି ଶୀଳା ସ୍ମାରକୀର ଦୃଶ୍ୟ ଅତ୍ୟନ୍ତ ମନମୁଗ୍ଧକର । କନ୍ୟାକୁମାରୀ ମନ୍ଦିର, ସମୁଦ୍ରକୂଳଦୃଶ୍ୟ, ଏବଂ ସେଠାରେ ସୂର୍ଯ୍ୟ ଉଦୟ ଓ ଅସ୍ତ ଅତ୍ୟନ୍ତ ଚମତ୍କାର ।

କନ୍ୟାକୁମାରୀରେ ଭାରତ ମହାସାଗର, ବଙ୍ଗୋପସାଗର ଏବଂ ଆରବ ସାଗର ଏହ ତିନି ସମୁଦ୍ରର ସଙ୍ଗମ ସ୍ଥଳ । ସୂର୍ଯ୍ୟ ବଙ୍ଗୋପ ସାଗରରେ ଉଦୟ ହୋଇ ଆରବ ସାଗରରେ ଅସ୍ତ ହୁଅନ୍ତି । ଏଠାରେ ସମୁଦ୍ରକୂଳର ବାଲି ଲାଲ ଓ କଳାରଙ୍ଗର ମିଶ୍ରଣ ଚାଉଳ ଦାନା ପରି ଦେଖାଯାଏ । ପୌରାଣିକ କାଳରେ ରାଜା ଭରତଙ୍କ କନ୍ୟା ଏହି ଅଞ୍ଚଳରେ ଶାସନ କରୁଥିଲେ ବୋଲି କିମ୍ବଦନ୍ତୀ ଅଛି । ଏହି ସ୍ଥାନଟି ଆଧ୍ୟାତ୍ମିକତା ଏବଂ ପବିତ୍ରତାରେ ପରିପୂର୍ଣ୍ଣ । ଏହି ତୀର୍ଥର ମହିମା ଅପାର । କନ୍ୟାକୁମାରୀରୁ ବସ୍‌ରେ ଯାଇ ସୁଚିନ୍ଦ୍ରମ୍ ଓ ଅନ୍ୟାନ୍ୟ ମନ୍ଦିର ଦେଖିଲୁ । ତା ୨୨.୧.୭୬ରେ ପ୍ରସିଦ୍ଧ ମୀନାକ୍ଷୀ ମନ୍ଦିର, ମ୍ୟୁଜିୟମ, ଥାଉଜେଣ୍ଡ ପିଲର୍ ମଣ୍ଡପ ଦେଖି ରାମେଶ୍ୱର ଗଲୁ । ରାମେଶ୍ୱରରେ ସମୁଦ୍ରକୂଳ ଓ ମନ୍ଦିର ଦର୍ଶନ କଲୁ । ତା'ପରେ ପଣ୍ଡିଚେରୀ ଯାଇ ସେଠାରେ ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କର ସମାଧି,ଅରଭିଲ୍ ଦେଖିଲୁ । ସେଠାରୁ ବସ୍‌ରେ ମାନ୍ଦ୍ରାଜ ଗଲୁ । ଦକ୍ଷିଣ ଭାରତରେ ବସ୍‌ରେ ଯିବା ଅନେକ ସୁବିଧାଜନକ । ଯେତେବେଳେ ଚାହିଁଲେ ସେତେବେଳେ ବସ୍ ମିଳିବ । ଟୁରିଷ୍ଟ ବସ୍ ମଧ୍ୟ ମିଳିବ । ମାନ୍ଦ୍ରାଜରେ ପାର୍ଥସାରଥି ମନ୍ଦିର, ସ୍ନେକ(ସର୍ପ) ପାର୍କ, ଗାନ୍ଧି ମଣ୍ଡପ, ରାଜାଜୀ ମଣ୍ଡପ, ମେରାଇନ୍ ବିଚ(ସମୁଦ୍ରକୂଳ), କପିଳେଶ୍ୱର ମନ୍ଦିର, ଆଦି ବିଭିନ୍ନ ସ୍ଥାନ ଟାଉନ୍ ବସ୍‌ରେ ବୁଲି ଦେଖିଲୁ । ତା'ପରେ ଟୁରିଷ୍ଟ ବସ୍‌ରେ କାଞ୍ଚିପୁରମ୍, ମହାବଳେଶ୍ୱରମ୍, ଶିବ କାଞ୍ଚି, ବିଷ୍ଣୁ କାଞ୍ଚି, ପକ୍ଷୀ ତୀର୍ଥ ଦେଖିଲୁ । କାଞ୍ଚି ମନ୍ଦିରରେ ଥିବା ପଥର ଶିକୁଳି ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ କାରୁକାର୍ଯ୍ୟ । ତା'ପରେ ବାଙ୍ଗାଲୋର ଯାଇ ସେଠାରୁ ହ୍ୱାଇଟ ଫିଲଡ୍ ଯାଇ ସାଇବାବାଙ୍କୁ ଦର୍ଶନ କଲୁ । ସେଠାରୁ ତିରୁପତି ଯାଇ ଦିନେ ରହି ଭେଙ୍କେଟେଶ୍ୱରଙ୍କ ଦର୍ଶନ କଲୁ । ତିରୁପତିରୁ ରେଳ ଯୋଗେ ପୁରୀରେ ଆସି ପହଞ୍ଚିଲୁ । ଜଗନ୍ନାଥଙ୍କୁ ଦର୍ଶନ ଏବଂ ପୁରୀର ଶଙ୍କରାଚାର୍ଯ୍ୟ ମଠ ଦେଖି ଭୁବନେଶ୍ୱର ଫେରିଲୁ । କାଲାଡ଼ିରେ ଶଙ୍କରାଚାର୍ଯ୍ୟଙ୍କ ଜନ୍ମସ୍ଥାନରୁ ତୀର୍ଥ ଯାତ୍ରା ଆରମ୍ଭ ହୋଇ ପୁରୀର ଗୋବର୍ଦ୍ଧନ ପୀଠରେ ଯାତ୍ରା ସମାପନ ହୋଇଥିଲା ।

ଦକ୍ଷିଣ ଭାରତ ଯାତ୍ରା ବଡ଼ ଆମୋଦ ଦାୟକ ଥିଲା ।

୧୯୮୨ ଜୁନ୍ ପହିଲାରୁ ମୁଁ ଓ ମୋ ସ୍ତ୍ରୀ ଉତ୍ତର ଭାରତ ତଥା ବଦ୍ରୀନାଥ ଯାତ୍ରାରେ ବାହାରିଲୁ । ଏଥର ଭାରତ ଦର୍ଶନ ତୀର୍ଥ ସ୍ପେଶାଲ୍ ଟ୍ରେନ୍‌ରେ ଯାଇଥିଲୁ । ପୁରୀରୁ ସ୍ପେଶାଲ୍ ଗାଡ଼ିଟି ବାହାରିଲା । ଜଗନ୍ନାଥଙ୍କ ଦର୍ଶନ କରି ଗାଡ଼ିରେ ବସିଲୁ । ବାଟରେ ଟୁରିଷ୍ଟ ବସ୍‌ରେ ଟାଟା ସହର ଦେଖି ଆଲ୍ଲାହାବଦରେ ପହଞ୍ଚିଲୁ । ସେଠାରେ ତ୍ରୀବେଣୀ ସଙ୍ଗମକୁ ଯାଇ ନନା ଓ ବୋଉଙ୍କ ଅସ୍ଥି ବିସର୍ଜନ କଲୁ । ବାଟରେ ଅଶୋକଙ୍କ ଦୁର୍ଗ, ଆନନ୍ଦ ଭବନ, ହନୁମାନ ମନ୍ଦିର, ଭରଦ୍ୱାଜ ମନ୍ଦିର, ଆହ୍ଲାବାଦ ବିଶ୍ୱବିଦ୍ୟାଳୟ ଓ ସହରର ଅନ୍ୟାନ୍ୟ ସ୍ଥାନ ଦେଖିଲୁ । ତା'ପରେ ଆଗ୍ରା ଯାଇ ସେଠାରେ ତାଜ ମହଲ, ଫତେପୁର, ଆଗ୍ରା ଦୁର୍ଗ, ଦୟାଲ ବାଗ ଆଦି ଦେଖିଲୁ । ତାଜମହଲର ଦୃଶ୍ୟ ଅତ୍ୟନ୍ତ ମନୋରମ ଥିଲା । ଆଗ୍ରାରୁ ବାହାରି ମଥୁରାରେ

ଶ୍ରୀକୃଷ୍ଣ ବନ୍ଦିଶାଳା, ବିରଳା ମନ୍ଦିର, ବୃନ୍ଦାବନ କୁଞ୍ଜ,ଗିରିଗୋବର୍ଦ୍ଧନ. ରାଧାକୁଣ୍ଡ, ଶ୍ୟାମ କୁଣ୍ଡ, ଗୁପ୍ତ ଗଙ୍ଗା, ଗୋକୁଳ, ଦ୍ୱାରିକାଧୀଶ, ଯମୁନା ଘାଟ, ଆଦି ଦେଖିଲୁ । ତା'ପରେ ଦିଲ୍ଲୀ ଯାଇ ଟୁରିଷ୍ଟ ବସ୍‌ରେ ବୁଲି ବିରଳା ମନ୍ଦିର, କାଳୀ ମନ୍ଦିର, ଯନ୍ତରମନ୍ତର, ଲାଲକିଲା, କୁତବ୍ ମିନାର, ଗାନ୍ଧି ଓ ନେହେରୁ ସମାଧୀ, ତ୍ରୀମୂର୍ତ୍ତି ଭବନ, ସୁପ୍ରିମ କୋର୍ଟ, ଜାମା ମସଜିଦ୍, ଚାନ୍ଦିନି ଚୌକ ବଜାର ଦେଖିଲୁ । ଦିଲ୍ଲୀରୁ ବାହାରି ରେଳରେ ଜାମୁତାୱି ଷ୍ଟେସନ୍‌ରେ ପହଞ୍ଚିଲୁ । ସେଠାରୁ ବସ୍‌ରେ ଶ୍ରୀନଗର ଗଲୁ । ଶ୍ରୀ ନଗରରେ ମୋଗଲ ଗାର୍ଡ଼ନ୍, ଡ଼ାଲଲେକ୍, ଶଙ୍କାରାଚାର୍ଯ୍ୟ ମନ୍ଦିର ଓ ଅନ୍ୟାନ୍ୟ ଜାଗା ଦେଖିଲୁ । ଜାମୁରେ ରଘୁନାଥ ମନ୍ଦିର ଦେଖିଲୁ । ଏହି ମନ୍ଦିରରେ ଅଗଣିତ ଶାଳଗ୍ରାମ ସ୍ଥାପନ କରାଯାଇଛି । ୩୩ କୋଟି ଶାଳଗ୍ରାମ ସ୍ଥାପିତ ହୋଇଛି ବୋଲି ଲୋକେ କହନ୍ତି । ଏହି ମନ୍ଦିର ଜାମୁର ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଗୋଟିଏ ଗୋଟିଏ ଶାଳଗ୍ରାମର ଆକାର ଫୁଟବଲ୍ ପରି ହେବ । ମନ୍ଦିର ବେଢ଼ାର ଚତୁର୍ଦ୍ଦିଗରେ ଶାଳଗ୍ରାମ ମନ୍ଦିର ପରିପୂର୍ଣ୍ଣ । ଏଠାରେ ଗୋଟିଏ ଶିବ ମନ୍ଦିର ଅଛି । ଗୋଟିଏ ସ୍ଥାନରେ ଧଳା ଶିବ ଲିଙ୍ଗ ମଧ୍ୟରେ ବିଷ୍ଣୁଙ୍କର ପ୍ରତିମା ଅଛି । ଦର୍ଶକ ଯେଉଁ ଦିଗକୁ ଘୁଞ୍ଚିବ ପ୍ରତିମାଟି ସେ ଦିଗକୁ ଘୁଞ୍ଚିବା ଭଳି ଦେଖାଯାଏ । ମନ୍ଦିରଟି ଅତ୍ୟନ୍ତ ସୁନ୍ଦର, ଏଠାରେ ପ୍ରଧାନ ଦେବ ଦେବୀ ହେଲେ ରାମ, ଲକ୍ଷ୍ମଣ,ସୀତା ଓ ହନୁମାନ । ମନ୍ଦିରଟି ଶୈବ ଓ ବିଷ୍ଣୁପୂଜାର ସମନ୍ୱୟର ପ୍ରତୀକ । ଜାମୁରୁ ଅମୃତସର ଯାଇ ସ୍ୱର୍ଣ୍ଣ ମନ୍ଦିର, ଲକ୍ଷ୍ମୀନାରାୟଣ ମନ୍ଦିର, ଜାଲିଆନାବାଗ୍ ଦେଖିଲୁ । ସେଠାରୁ ହରିଦ୍ୱାର ଯାଇ ସେଠାରେ ଗଙ୍ଗା ନଦୀରେ ସ୍ନାନ କରି ଅନ୍ୟାନ୍ୟ ମନ୍ଦିର ଦେଖିଲୁ । ହରିଦ୍ୱାରରୁ ବଦ୍ରୀନାଥ ୩୨୦ କିଲୋମିଟର ଘାଟିରାସ୍ତା ବସ୍‌ରେ ଯିବାକୁ ହେଲା । ବସ୍‌ରେ ଘାଟି ପାର ହେଲା ବେଳେ ଭୟ ଜାତ ହେବା ସ୍ୱାଭାବିକ । ବସ୍‌ରୁ ବାହାରକୁ ଦେଖିଲେ ମୁଣ୍ଡ ବୁଲିଲା ଭଳି ଅନୁଭୂତି ହୁଏ । ଘାଟି ଉପରୁ ଅଳକାନନ୍ଦା ନଦୀର ଦୃଶ୍ୟ କଳା ଆକାଶରେ ଗୋଟିଏ ଧଳା ଶାଢ଼ୀ ପଡ଼ିଲା ପରି ଦେଖାଯାଏ । ବାଟରେ ଗୋଟିଏ ରାତି ବିଶ୍ରାମ ନେବାକୁ ହୁଏ । ବଦ୍ରୀନାଥ ମନ୍ଦିରଟି ପାହାଡ଼ ଉପରେ ଗୋଟିଏ ସମତଳ ଜାଗାରେ ଅବସ୍ଥିତ । ଚାରିଆଡ଼େ ପାହାଡ଼ ଘେରି ରହି ଅଛି । ମନ୍ଦିର ବେଢ଼ା ମଧ୍ୟରେ ଗୋଟିଏ ଉଷ୍ଣ ଜଳ ପ୍ରସ୍ରବଣ ଅଛି । ଗୋଟିଏ ବିରାଟ କୁଣ୍ଡରେ ଏହି ଉଷ୍ଣ ଜଳ ସଂଗ୍ରହ କରି ଲୋକେ ସ୍ନାନ କରିବା ପାଇଁ ବ୍ୟବସ୍ଥା କରାଯାଇଛି । ଏତେ ଉଚ୍ଚରେ ଗୋଟିଏ ଉଷ୍ଣ ପ୍ରସ୍ରବଣ ଥିବା ଆଶ୍ଚର୍ଯ୍ୟ ଲାଗେ । ବୋଧ ହୁଏ ସେହି ଥଣ୍ଡା ସ୍ଥାନରେ ଲୋକେ ଉଷ୍ଣ ଜଳରେ ସ୍ନାନ କରିବା ପାଇଁ ଭଗବାନଙ୍କର ଏ ବ୍ୟବସ୍ଥା । ବଦ୍ରୀନାଥ ମନ୍ଦିର ପାଦ ଦେଶରେ ଅଳକା ନନ୍ଦା ନଦୀ ବହିଯାଉଛି । ନଦୀକୁ ଯିବାକୁ ପାହାଚ ପଡ଼ିଛି ଏବଂ ପାଣି ପାଖରେ ଲୁହାର ଶିକୁଳୀ ଅଛି । ତେଣୁ କେହି ନଦୀକୁ ଭାସି ଚାଲିଯିବାର ଆଶଙ୍କା ନଥାଏ । ସେଠାରେ ପିତୃପୁରୁଷଙ୍କ ପାଇଁ ତର୍ପଣ କରାଯାଇପାରେ । ମୁଁ ତର୍ପଣ କଲି । ବୟସ୍କ ଲୋକେ କିମ୍ୱା ଶ୍ୱାସରୋଗୀଙ୍କ ପକ୍ଷେ ଏଠାରେ ନିଶ୍ୱାସ ନେବା କଷ୍ଟକର ବୋଧ ହୁଏ । ବଦ୍ରିନାଥ ସ୍ଥାନଟି ଅତ୍ୟନ୍ତ ମନୋରମ ଓ ପବିତ୍ର ।

ବଦ୍ରୀନାଥରୁ ଫେରିଲା ବେଳେ ଋଷିକେଶରେ କିଛି ସମୟ ରହି, ଲଞ୍ଚରେ ଗଙ୍ଗା ନଦୀ ପାର ହୋଇ, ଅପର କୂଳରେ ଥିବା ମନ୍ଦିର ଓ ଆଶ୍ରମ ସବୁ ଦେଖିଲୁ । ଆସିଲା ବେଳେ ବାଟରେ ଲକ୍ଷ୍ମଣ ଝୋଲା ମଧ୍ୟ ଦେଖିଲୁ । ସେଠାରୁ ଲକ୍ଷ୍ନୌ ଆସି ସଂଗ୍ରାହାଳୟ, ଗୋପାଳ ଘାଟ, ଚିଡ଼ିଆଖାନା ଓ ଅନ୍ୟାନ୍ୟ ସ୍ଥାନ ଦେଖି ବନାରସ୍ ଗଲୁ । ବନାରସ୍‌ରେ ବିରଳା ମନ୍ଦିର, ହିନ୍ଦୁ ବିଶ୍ୱବିଦ୍ୟାଳୟ, ତୁଳସୀ ଦାସ ମନ୍ଦିର, ସଂକଟ ମୋଚନ ହନୁମାନ ମନ୍ଦିର, ଦୁର୍ଗା ମନ୍ଦିର, ଗଙ୍ଗାନଦୀ, ଦଶାଶ୍ୱମେଧ ଘାଟ ଦେଖିଲୁ । ଡଙ୍ଗାରେ ଗଙ୍ଗା ନଦୀର ଅପର ପାର୍ଶ୍ୱକୁ ଯାଇ ସ୍ନାନ କଲୁ । ତା'ପରେ କାଶୀ ବିଶ୍ୱନାଥଙ୍କୁ ଦର୍ଶନ କଲୁ । ସେଠାରୁ ଗୟା ଯାଇ ବୁଦ୍ଧ ଗୟା ଓ ଅନ୍ୟାନ୍ୟ ମନ୍ଦିର ଦେଖିଲୁ । ଗୟାରୁ ବାହାରି ରେଳରେ ପୁରୀରେ ଯାଇ ପହଞ୍ଚିଲୁ । ପୁରୀରେ ଜଗନ୍ନାଥଙ୍କ ଦର୍ଶନ କରି ଭୁବନେଶ୍ୱର ଫେରିଲୁ । ତା ୨୪.୬.୧୯୮୨ରେ ଉତ୍ତର ଭାରତ ଯାତ୍ରା ସମାପନ ହୋଇଥିଲା ।

ଉତ୍ତର ଭାରତ ଯାତ୍ରା ମଧ୍ୟ ଆନନ୍ଦ ଦାୟକ ହୋଇଥିଲା । ସ୍ପେସାଲ ରେଳ ଡ଼ବାରେ ଦୀର୍ଘ ୨୪ ଦିନ ବିଭିନ୍ନ ସ୍ଥାନରୁ ଆସିଥିବା ଯାତ୍ରୀଙ୍କ ସହ ସ୍ନେହାଳାପରେ ଦିନ କଟିଥିଲା । ସ୍ପେସାଲ ଟ୍ରେନ୍‌ରେ ଯିବା ହେତୁ ଅପରିଚିତ ଜାଗାରେ ରହିବା ପାଇଁ ଲଜ୍ ଖୋଜିବା ସମସ୍ୟା ନଥିଲା । ଯାତ୍ରା ମଧ୍ୟ ନିରାପଦ ଥିଲା ।

୧୯୮୩ ଅଗଷ୍ଟ ଦୁଇତାରିଖରେ ମୁଁ ଓ ମୋର ସ୍ତ୍ରୀ ପଶ୍ଚିମ ଭାରତ ତଥା ଦ୍ୱାରକାନାଥ ଦର୍ଶନ ଉଦ୍ଦେଶ୍ୟରେ ବାହାରିଲୁ । ଭୁବନେଶ୍ୱରରୁ କୋଣାର୍କ ଏକସ୍‌ପ୍ରେସରେ ବମ୍ବେ ପହଞ୍ଚି ସେଠାରୁ ଅହମଦାବାଦ ଏବଂ ତାପରେ ଗାଡ଼ି ବଦଳାଇ ଦ୍ୱାରକାରେ ପହଞ୍ଚିଲୁ । ବାଟରେ ବମ୍ବେରେ ଟୁରିଷ୍ଟ ବସ୍‌ରେ ଇଣ୍ଡିଆ ଗେଟ,ଏକ୍ୱାରିଅମ୍, କମଳା ନେହେରୁ ପାର୍କ, ମାଲବାର୍ ହିଲସ୍, ଚୌପାଠି, ପେରବାନ ବିଚ୍(ସମୁଦ୍ରକୂଳ) ଆଦି ସହରର ବିଭିନ୍ନ ସ୍ଥାନ ମଧ୍ୟ ବୁଲି ଦେଖିଲୁ । ଦ୍ୱାରକାରେ ଦ୍ୱାରକାନାଥଙ୍କର ଦର୍ଶନ ପରେ ଓଖା ଯାଇ ସେଠାରୁ ମଟର ଲଞ୍ଚରେ ଭେଟ ଦ୍ୱାରକା ଯାଇ ସେଠାରେ ମଧ୍ୟ ଦ୍ୱାରକାନାଥଙ୍କୁ ଦର୍ଶନ କଲୁ । ବାଟରେ ଜ୍ୟୋତି ଲିଙ୍ଗ ମନ୍ଦିର, ଶ୍ରୀକୃଷ୍ଣ ମନ୍ଦିର,ରୁକ୍ମିଣୀଙ୍କ ମନ୍ଦିର, ଗୋପୀ ତଳାଢ଼ ମଧ୍ୟ ଦେଖିଲୁ । ସମୁଦ୍ର ମଝିରେ ଗୋଟିଏ ଛୋଟିଆ ଦ୍ୱୀପରେ ଭେଟ ଦ୍ୱାରକା ମନ୍ଦିର ଅବସ୍ଥିତ । ଭେଟ ଦ୍ୱାରକାରେ ଦ୍ୱାରକାଧୀଶଙ୍କ ବିଶାଳ ଓ ମନୋରମ ମୂର୍ତ୍ତି ବିଦ୍ୟମାନ । ଦ୍ୱାରକାରେ ସୂର୍ଯ୍ୟଉଦୟ ଓ ଅସ୍ତ ମଧ୍ୟ ଦେଖିଲୁ । ଦ୍ୱାରକାରେ ସନ୍‌ସେଟ୍ ପଇଣ୍ଟ, ବିରଳା ମନ୍ଦିର, ଲାଇଟ ହାଉସ୍,ସିଦ୍ଧେଶ୍ୱର ମହାଦେବ ମନ୍ଦିର, ଲକ୍ଷ୍ମୀନାରାୟଣ ମନ୍ଦିର, ସାବିତ୍ରୀ କୁଣ୍ଡ, ଗୋମତୀ ଘାଟ ଦେଖିଲୁ ।

ଦ୍ୱାରକାରୁ ଫେରିଲା ବେଳେ ବସ୍‌ରେ ଯାଇ ପୋର ବନ୍ଦରରେ ମହାତ୍ମାଗାନ୍ଧିଙ୍କ ଜନ୍ମସ୍ଥାନ, ସୁଦାମା ମନ୍ଦିର, ସୋମନାଥ ମନ୍ଦିର, ଜରାଶବର ଶ୍ରୀକୃଷ୍ଣଙ୍କୁ ଯେଉଁଠାରେ ଶର

ବିଦ୍ଧ କରିଥିଲା ସେହିସ୍ଥାନ, ଶ୍ରୀକୃଷ୍ଣଙ୍କୁ ଯେଉଁ ଠାରେ ଦାହ କରାଯାଇଥିଲା ସେହି ଯାଗା, ଲକ୍ଷ୍ମୀନାରାୟଣ ମନ୍ଦିର, ତ୍ରିବେଣୀ ଘାଟ (ସରସ୍ୱତୀ, କପିଳା ଓ ଅନ୍ୟ ଏକ ନଦୀର ସଂଗମ), ଆଦିଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ସ୍ଥାପିତ ଶାରଦା ପୀଠ, ଶଙ୍କର ଗାଦି ଇତ୍ୟାଦି ଦେଖିଲୁ । ସୋମନାଥରୁ ବାହାରି ପୁଣି ଅହମଦାବାଦରେ ପହଞ୍ଚିଲୁ । ଟୁରିଷ୍ଟ ବସ୍‌ରେ ସେଠାରେ ସାବରମତୀ ଆଶ୍ରମ, ରଣ ଛୋଡ଼ ମନ୍ଦିର, ଜୈନ ମନ୍ଦିର, ମ୍ୟୁଜିୟମ୍ ଦେଖି ସେଠାରୁ ବମ୍ବେ ଫେରିଲୁ । ବମ୍ବେରୁ ଆସି ଖୋରଧା ରୋଡ଼ରୁ ପୁରୀଯାଇ ଜଗନ୍ନାଥଙ୍କୁ ଦର୍ଶନ କରି ଭୁବନେଶ୍ୱର ଫେରିଲୁ । ଏପରି ଭାବେ ଦ୍ୱାରକା ଦର୍ଶନ ସମାପନ ହେଲା । ଯାତ୍ରା ଶୁଭ ଓ ଆନନ୍ଦ ଦାୟକ ଥିଲା । ଚାରିଧାମ ଦର୍ଶନ ଅଭିଳାଷ ପୂର୍ଣ୍ଣ ହେଲା ।

ଆମ ଘର ଇଷ୍ଟ ଦେବୀ ହେଉଛନ୍ତି ରାମଚଣ୍ଡୀ । ରାମଚଣ୍ଡୀ ମନ୍ଦିରଟି ଗୋଟିଏ ଛୋଟିଆ ପାହାଡ଼ ଉପରେ । ଶ୍ରୀ ଶ୍ରୀ ଶ୍ରୀ ରାମଚଣ୍ଡୀ ହେଉଛନ୍ତି ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ ଏହି ତ୍ରି ଶକ୍ତିଙ୍କ ସମାବେଶ । ମନ୍ଦିରଟି ଶାନ୍ତ ପରିବେଶ ମଧ୍ୟରେ ଅବସ୍ଥିତ । ଏହା ଏକ ପ୍ରସିଦ୍ଧ ତନ୍ତ୍ର ପୀଠ । ଏହି ଜାଗାଟି ଛତ୍ରପୁର ଠାରୁ ପ୍ରାୟ ଆଠ କିଲୋମିଟର ହେବ, ପାହାଡ଼ ତଳେ ରାଜପୁର୍ ଗ୍ରାମ ଅଛି । ଏହି ମନ୍ଦିରକୁ ମଧ୍ୟ ମୁଁ ଓ ମୋର ସ୍ତ୍ରୀ ଯାଇ ଆମର ଇଷ୍ଟ ଦେବୀଙ୍କ ଦର୍ଶନ ଲାଭ କରିଛୁ । ପ୍ରତ୍ୟେକ ବ୍ୟକ୍ତି ତାଙ୍କର ନିଜର ଇଷ୍ଟ ଦେବ କିମ୍ବା ଇଷ୍ଟ ଦେବୀଙ୍କ ଦର୍ଶନ କରିବା କର୍ତ୍ତବ୍ୟ ।

# ଗୟାତୀର୍ଥ

ତା ୧୭.୪.୧୯୭୫ରେ ନନା, ବୋଉ ଓ ମୁଁ ଗୟା ଯାଇଥିଲୁ । ନନା ତାଙ୍କର ପିତୃପୁରୁଷଙ୍କୁ ପିଣ୍ଡ ଦେବାର ୧୨ ବର୍ଷ ପୁରିଯାଇଥିବାରୁ ପୁଣି ଗୟାରେ ପିଣ୍ଡ ଦେଇଥିଲେ । ମୁଁ ତାଙ୍କ ସାଙ୍ଗରେ ଯାଇଥିଲି । ପିଣ୍ଡ ଦେଲାପରେ ପୁରୀଯାଇ ଜଗନ୍ନାଥଙ୍କୁ ଦର୍ଶନ କରି ତା ୨୨.୪.୭୫ରେ ଭୁବନେଶ୍ୱର ଫେରିଥିଲୁ ।

୧୯୮୨ ଜୁନ ମାସରେ ମୁଁ ମୋର ସ୍ତ୍ରୀ ସହିତ ଯେତେବେଳେ ଉତ୍ତର ଭାରତ ତୀର୍ଥଯାତ୍ରାରେ ଯାଇଥିଲୁ ସେତେବେଳକୁ ନନାଙ୍କର ଦେହାନ୍ତ ହେବାର ଏକ ବର୍ଷ ପୂର୍ତ୍ତି ହୋଇ ନଥିବାରୁ ଗୟା ଯାଇ ଥିଲେ ସୁଦ୍ଧା ପିଣ୍ଡ ଦେଇ ନଥିଲୁ । ତେଣୁ ପିତୃ ଶ୍ରାଦ୍ଧ କରିବା ପାଇଁ ୧୯୮୬ ଅକ୍ଟୋବର ପହିଲା ଦିନ ମୁଁ ଓ ମୋର ସ୍ତ୍ରୀ ଗୟା ଯାଇଥିଲୁ । ସରଜୂନଦୀ କୂଳରେ ମହାଳୟା ଅମାବାସ୍ୟାଦିନ ତର୍ପଣ ଓ ଶ୍ରାଦ୍ଧ କରି ବିଷ୍ଣୁପାଦ ମନ୍ଦିର, ଅକ୍ଷୟ ବଟ ଦେଖି ନଦୀର ଅପର ପାର୍ଶ୍ୱକୁ ଯାଇ ବାଲୁକା ପିଣ୍ଡ ଦେଲୁ । ପିତୃପୁରୁଷଙ୍କ ପାଇଁ ଶ୍ରାଦ୍ଧ, ପିଣ୍ଡଦାନ, ତର୍ପଣ ପ୍ରତ୍ୟେକ ହିନ୍ଦୁଙ୍କର ପ୍ରଧାନ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟରେ ଅବହେଳା କରିବା ଆଦୌ

ଉଚିତ ନୁହେଁ । ଗୟାରେ ପିଣ୍ଡଦାନ କଲା ପରେ ସୁଦ୍ଧା ମୁଁ ନନା ଓ ବୋଉଙ୍କ ଶ୍ରାଦ୍ଧ କରୁଛି । ପ୍ରତ୍ୟେକ ହିନ୍ଦୁ ପ୍ରତିଦିନ ପଞ୍ଚ ଯଜ୍ଞ କରିବା ଉଚିତ । ୧. ଦେବ ଯଜ୍ଞ ଅର୍ଥାତ୍ ଦେବ ଦେବୀ ଉପାସନା, ୨. ବ୍ରହ୍ମ ଯଜ୍ଞ ଅର୍ଥାତ୍ ଆଧାତ୍ମିକ ଗ୍ରନ୍ଥ ଅଧ୍ୟୟନ, ୩. ପିତୃଯଜ୍ଞ ଅର୍ଥାତ୍ ପିତୃପୁରୁଷଙ୍କୁ ସ୍ମରଣ କରି ଅର୍ଘ୍ୟପ୍ରଦାନ କରିବା , ୪. ଭୂତ ଯଜ୍ଞ ଅର୍ଥାତ୍ ଅଦୃଶ୍ୟ ସତ୍ତା ଏବଂ ପଶୁପକ୍ଷୀ ଆଦି ପ୍ରାଣୀଙ୍କୁ ଖାଦ୍ୟ ପ୍ରଦାନ ଏବଂ ୫. ପୁରୁଷ ଯଜ୍ଞ ଅର୍ଥାତ୍ ଅତିଥି, କ୍ଷୁଧାର୍ତ୍ତ, ଗରିବମାନଙ୍କୁ ଅନ୍ନଦାନ । ଗୟାରୁ ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରି ଭୁବନେଶ୍ୱର ଫେରିଲୁ ।

ଓଡ଼ିଶା ଅନେକ ତୀର୍ଥ, ମନ୍ଦିର ଓ ଦର୍ଶନୀୟ ସ୍ଥାନରେ ପୂର୍ଣ୍ଣ । ପୁରୀ ଭାରତର ଚାରିଧାମ ମଧ୍ୟରୁ ଅନ୍ୟତମ । ପୁରୀ, ଭୁବନେଶ୍ୱର, କୋଣାର୍କ ଏହି ତିନୋଟି ମନ୍ଦିରରେ ପରୀପୂର୍ଣ୍ଣ । ଚାକିରିର ପ୍ରଥମ ସାତ ବର୍ଷ ପୁରୀରେ ଥିଲି । ତେଣୁ ପୁରୀର ଅଧିକାଂଶ ମନ୍ଦିର ଏବଂ ଜଗନ୍ନାଥଙ୍କର ସମସ୍ତ ପର୍ବପର୍ବାଣୀ ଦେଖିବାର ସୁଯୋଗ ମତେ ମିଳିଛି । ୧୯୫୦ରେ ଜଗନ୍ନାଥଙ୍କ ନବକଳେବର ମଧ୍ୟ ଦେଖିଛି । ତାପରେ କଟକରେ ତିନିବର୍ଷ ରହିବା ସମୟ ମଧ୍ୟ ଆଖପାଖ ଅନେକ ମନ୍ଦିର ଦେଖିଛି । କଟକରୁ ଭୁବନେଶ୍ୱରରେ ରହିବା ସୁଯୋଗ ମିଳିଲା ।ଭୁବନେଶ୍ୱର ଓ ଆଖ ପାଖ ଅଞ୍ଚଳରେ ମନ୍ଦିର ଅସଂଖ୍ୟ । ଏଥିରୁ କେତେକ ଦେଖିଛି । ଏକାଧିକ ଥର କୋଣାର୍କ ଓ ଚନ୍ଦ୍ରଭାଗା ମଧ୍ୟ ଯାଇଛି । ଏପରି ଭାବରେ ଅନେକ ମନ୍ଦିର ଓ ତୀର୍ଥ ସ୍ଥାନ ଦେଖିବାର ସୁଯୋଗ ଜୀବନରେ ମିଳିଛି ।

ଚାକିରିରେ ଥିଲା ବେଳେ ମୁଁ ପ୍ରାୟ ଓଡ଼ିଶା ଓ ଗଡ଼ଜାତ ଅଞ୍ଚଳର ମଧ୍ୟ ଅନେକ ସ୍ଥାନ ଯିବାର ସୁଯୋଗ ମିଳିଛି । ସେଗୁଡ଼ିକ ମଧ୍ୟରେ- ନୀଳମାଧବ ମନ୍ଦିର,(କଣ୍ଟିଲୋ), ଖିରଚୋରା ମନ୍ଦିର(ରେମୁଣା), ଶାରଳା ପୀଠ, ବିରଜା ପୀଠ(ଯାଜପୁର), ବଳଦେବ ଜୀଉ(କେନ୍ଦ୍ରାପଡ଼ା), ସମଲେଶ୍ୱରୀ(ସମ୍ବଲପୁର), ଭଗବତୀ(ବାଣପୁର), ତାରାତାରିଣୀ(ଗଞ୍ଜାମ), ଭୈରବୀ(ଗଞ୍ଜାମ), ମହୁରୀ କାଳୁଆ(ଗଞ୍ଜାମ), ପାର୍ଥସାରଥି ମନ୍ଦିର (ଜରଡ଼), ବାର୍ ଦେବୀ(ଭଞ୍ଜନଗର), ଗଣେଶ ପୀଠ ପଞ୍ଚମା (ଗଞ୍ଜାମ), ଜଗନ୍ନାଥ ମନ୍ଦିର(କୋରାପୁଟ) , ଜଗନ୍ନାଥ ମନ୍ଦିର (ବାରିପଦା), ନୃସିଂହନାଥ ମନ୍ଦିର(ବଲାଙ୍ଗିର), ମହିମା ପୀଠ(ଯୋରନ୍ଦା), ଧବଳେଶ୍ୱର (କଟକ) ଇତ୍ୟାଦି ।

## କୁମ୍ଭମେଳା

ଆଲାହାବାଦରେ ଗଙ୍ଗା, ଯମୁନା ଓ ସରସ୍ୱତୀ ଏହି ତିନୋଟି ନଦୀର ସଙ୍ଗମକୁ ତ୍ରୀବେଣୀ ତୀର୍ଥ କୁହାଯାଏ । ପ୍ରତ୍ୟେକ ହିନ୍ଦୁ ଏହି ତ୍ରିବେଣୀ ସଙ୍ଗମ ଠାରେ ପିତୃପୁରୁଷଙ୍କର ଅସ୍ଥି ବିସର୍ଜନ କରି ପିଣ୍ଡଦାନ କରିବା ଏକ ପ୍ରଧାନ କର୍ତ୍ତବ୍ୟ ମନେ କରନ୍ତି । ଏଠାରେ ପ୍ରତି

ବାର ବର୍ଷରେ ଥରେ କୁମ୍ଭ ମେଳା ହୁଏ । କୁମ୍ଭ ମେଳା ସମୟରେ ଏଠାରେ ଲକ୍ଷ ଲକ୍ଷ ଲୋକ ଭାରତର ସବୁ ପ୍ରାନ୍ତରୁ ଆସି ସ୍ନାନ କରନ୍ତି ।

୨୦୦୧ ମସିହା ଫେବୃୟାରୀ ୧୧ ତାରିଖ କୁମ୍ଭ ସଂକ୍ରାନ୍ତି ଦିନ ମୁଁ ଓ ମୋର ସ୍ତ୍ରୀ ତୀର୍ଥଯାତ୍ରା ସ୍ପେଶାଲ ଟ୍ରେନ୍‌ରେ ସେଠାକୁ ଯାଇ ସ୍ନାନ ଓ ପିଣ୍ଡ ଦାନ କରିଥିଲୁ । ସ୍ପେଶାଲ୍ ଟ୍ରେନରେ ଗଲାବେଳେ ବାଟରେ କଲିକତାରେ ବେଲୁରମଠ, ରାମକୃଷ୍ଣ ପରମହଂସ, ଶାରଦା ଦେବୀ ଓ ସ୍ୱାମୀ ବିବେକାନନ୍ଦଙ୍କ ମନ୍ଦିର, ଦକ୍ଷିଣେଶ୍ୱର କାଳୀ, କଲିକତା କାଳୀ, ଦ୍ୱାଦଶ ଶମ୍ଭୁ, ପରେଶନାଥ ମନ୍ଦିର, ଭିକ୍ଟୋରିଆ ମେମୋରିଆଲ ଟୁରିଷ୍ଟ ବସ୍‌ରେ ଯାଇ ଦେଖିଲୁ । ତା'ପରେ ଅଯୋଧରେ ସରଜୁ ନଦୀରେ ମୁଣ୍ଡରେ ଜଳ ଛିଞ୍ଚି, ଶ୍ରୀରାମଙ୍କ ଜନ୍ମସ୍ଥାନ (ବାବରୀ ମସଜିଦ୍), ସୀତାଙ୍କ ନହର, ହନୁମାନଘାଟ,ଚାରିଧାମ ମନ୍ଦିର, ବିରଳା ମନ୍ଦିର, ବନାରସର ଦଶାଶ୍ୱମେଧ ଘାଟ, କାଶୀବିଶ୍ୱନାଥ ମନ୍ଦିର, ଅର୍ଣ୍ଣପୂର୍ଣ୍ଣା ମନ୍ଦିର,କାଶୀ ବିଶ୍ୱବିଦ୍ୟାଳୟ, ବିରଳା ମନ୍ଦିର,ଗୟାରେ ବିଷ୍ଣୁପାଦ ମନ୍ଦିର ଦେଖିଲୁ । ଗୟାରୁ ସ୍ପେସାଲ ଟ୍ରେନ ପୁରୀରେ ଯାଇ ପହଞ୍ଚିଲୁ । ଜଗନ୍ନାଥଙ୍କୁ ଦର୍ଶନ କରି ଭୁବନେଶ୍ୱର ଫେରିଲୁ । କୁମ୍ଭ ମେଳା ସ୍ନାନ ମନସ୍କାମନା ପୂର୍ଣ୍ଣ ହୋଇଥିଲା ।

## ଲେଖାଲେଖି

ସ୍କୁଲ, କଲେଜ ପାଠ୍ୟ ପୁସ୍ତକ ବ୍ୟତୀତ ବିଭିନ୍ନ ପୁସ୍ତକ ପଢ଼ିବାରେ ଛାତ୍ରାବସ୍ଥାରୁ ହିଁ ମୋର ରୁଚିଥିଲା । ଏହା ମୋର ନନାଙ୍କର ପ୍ରେରଣା ଥିଲା ।

ସାଧାରଣତଃ ମୁଁ ଧର୍ମ, ଦର୍ଶନ, ଇତିହାସ, ପୁରାଣ, ଜୀବନୀ, ସମାଲୋଚନା ଏବଂ ପ୍ରବନ୍ଧ ପଢ଼ିବାକୁ ଭଲ ପାଏ । ଚାକିରିରୁ ଅବସର ନେବାର ପ୍ରାୟ ପାଞ୍ଚ ଛଅବର୍ଷ ପୂର୍ବରୁ ଜ୍ୟୋତିଷ ବିଷୟରେ ପଢ଼ାପଢ଼ି କରିବାକୁ ମନ ବଳିଲା । ଭୁବନେଶ୍ୱର ସ୍ଥିତ ସାମନ୍ତ ଚନ୍ଦ୍ର ଶେଖର ସ୍ମୃତି ପରିଷଦ ଜ୍ୟୋତିଷ ବିଷୟରେ ଶିକ୍ଷାଦାନ ଏବଂ ପରୀକ୍ଷା କରି ସାର୍ଟିଫିକେଟ ଦେବା କଥା ଖବର କାଗଜରୁ ଦେଖିଲି । ସେହି ଅନୁଷ୍ଠାନ ପ୍ରତି ଯୋଗାଯୋଗ ରଖି ଜ୍ୟୋତିଷ ଶିକ୍ଷା ଆରମ୍ଭ କଲି । ଏହି ଅନୁଷ୍ଠାନ ଦ୍ୱାରା ପରିଚାଳିତ ପରୀକ୍ଷା ଜ୍ୟୋତିଷ ପ୍ରବେଶ ୧୯୭୮ରେ ଏବଂ ଜ୍ୟୋତିଷ ପ୍ରବୀଣ ୧୯୮୨ ରେ ପାସ୍ କଲି । ପରୀକ୍ଷା ଦେବାର ଉଦ୍ଦେଶ୍ୟ ହେଲା ଯେ ପଢ଼ାପଢ଼ି ପ୍ରତି ମନ ବଳିବ । କ୍ରମେ ଜ୍ୟୋତିଷ ବିଷୟରେ ବିଭିନ୍ନ ପତ୍ର ପତ୍ରିକାରେ ମୋର ଜ୍ୟୋତିଷିକ ପ୍ରବନ୍ଧ ପ୍ରକାଶ ପାଇଲା । ଓଡ଼ିଶା ବାହାରେ ମଧ୍ୟ ଇଂରାଜି ପତ୍ରିକାରେ ମୋର ପ୍ରବନ୍ଧ ପ୍ରକାଶ ପାଇଲା ।

ଥରେ ମୋର ସାନ ଝିଅର ଶ୍ୱଶୁର ଅର୍ଥାତ୍ ମୋର ସମୁଦି ରାଜ କିଶୋର ମିଶ୍ର ତାଙ୍କ ଅଞ୍ଚଳରେ ଜ୍ୟୋତିଷ ବିଷୟରେ ଗୋଟିଏ ସଭା ଆୟୋଜନ କରିଥିଲେ । । ସେଠାକୁ ଓଡ଼ିଶାର

ଦୁଇଜଣ ଜ୍ୟୋତିର୍ବିଦ୍‌ଙ୍କ ସହମତେ ମଧ୍ୟ ନିମନ୍ତ୍ରଣ କରିଥିଲେ ଏବଂ ମତେ ଜ୍ୟୋତିଷ ବିଷୟରେ କିଛି କହିବାକୁ ବାଧ୍ୟ କରିଥିଲେ । କୌଣସି ସଭାରେ କହିବା ଏହା ମୋର ପ୍ରଥମ । ସଭାରେ ଭାଷଣଟି ଭଲ ଥିଲା ବୋଲି ସେ କହିଲେ । ସେଥିପାଇଁ ମୁଁ ଗୋଟିଏ ଟିପ୍ପଣି ପ୍ରସ୍ତୁତ କରିଥିଲି । ଏହି ଟିପ୍ପଣିକୁ ଆଧାର କରି ମୋର ପ୍ରଥମ ଜ୍ୟୋତିଷ ପୁସ୍ତକ'' ଫଳିତ ଜ୍ୟୋତିଷ'' ଲେଖିଲି । ଜ୍ୟୋତିଷ ଲେଖା ପ୍ରତି ମୋର ସମ୍ମୁଦି ପ୍ରେରଣା ଦେଇଥିବାରୁ ମୁଁ ତାଙ୍କଠାରେ ଋଣି । ମୋର ସମ୍ମୁଦି ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ କରିଥିବା ଜଣେ ବିଶିଷ୍ଟ ଶିକ୍ଷକ ଥିଲେ । ସେ ଜଣେ ଉଚ୍ଚ କୋଟୀର ବିଜ୍ଞ ବ୍ୟକ୍ତି ଥିଲେ ।

''ଫଳିତ ଜ୍ୟୋତିଷ'' ପୁସ୍ତକଟି ଶ୍ରୀ ଗୁଣ୍ଡିଚା ତା ୨୪.୬.୧୯୯୦ରେ ପ୍ରକାଶ ପାଇଥିଲା । ପୁସ୍ତକଟି ଜ୍ୟୋତିଷୀ ଏବଂ ଜନସାଧାରଣଙ୍କ ଦ୍ୱାରା ପ୍ରଶଂସିତ ହେଲା ।ଏଥିରେ ସୃଷ୍ଟିର ବୈଚିତ୍ର୍ୟ ଠାରୁ ଆରମ୍ଭ କରି ଜ୍ୟୋତିଷ କ'ଣ, ମନୁଷ୍ୟର ଉପରେ ଗ୍ରହ ଓ ନକ୍ଷତ୍ରଙ୍କର ପ୍ରଭାବ, ଜ୍ୟୋତିଷର ସଂକ୍ଷିପ୍ତ ଇତିହାସ, ଧର୍ମ, ଜ୍ୟୋତିଷ ଓ ସମାଜର ପରସ୍ପର ସମ୍ବନ୍ଧ, କର୍ମବାଦ ଓ ଜ୍ୟୋତିଷ, ଜ୍ୟୋତିଷ ପ୍ରତି ଅଭିଯୋଗ ଓ ତାହା ଖଣ୍ଡନ, ଭବିଷ୍ୟତ ବାଣୀର ସୀମା, ଫଳିତ ଜ୍ୟୋତିଷର ଉପକାର, ଫଳିତ ଜ୍ୟୋତିଷ ଭିତ୍ତିକ ଭବିଷ୍ୟତ ବାଣୀର ସଫଳତା, ଗ୍ରହ ଶାନ୍ତି କ'ଣ ,ଫଳିତ ଜ୍ୟୋତିଷ ପ୍ରତି ଭ୍ରାନ୍ତ ଧାରଣା, ଫଳିତ ଜ୍ୟୋତିଷର ପତନର କାରଣ, ଫଳିତ ଜ୍ୟୋତିଷର ଭବିଷ୍ୟତ, ଫଳିତ ଜ୍ୟୋତିଷ ପ୍ରତି ବିଶିଷ୍ଟ ବ୍ୟକ୍ତିଙ୍କର ମତାମତ ଇତ୍ୟାଦି ବର୍ଣ୍ଣନା କରି ଫଳିତ ଜ୍ୟୋତିଷର ସତ୍ୟାସତ୍ୟ ଓ ଉପଯୋଗୀତା ପ୍ରତିପାଦନ କରାଯାଇଛି ।

ଫଳିତ ଜ୍ୟୋତିଷ ପୁସ୍ତକଟି ପଢ଼ି ଅନେକ ହିତାକାଂକ୍ଷୀ ବ୍ୟକ୍ତି ଏପରି ଗୋଟିଏ ଇଂରାଜିରେ ଲେଖିବାକୁ ଉତ୍ସାହିତ କରିଥିଲେ । ଏହି ପୁସ୍ତକରେ ଫଳିତ ଜ୍ୟୋତିଷ ପ୍ରତି ଓଡ଼ିଶାର ଅବଦାନ ଏବଂ ଓଡ଼ିଶାର କେତେକ ବିଶିଷ୍ଟ ଜ୍ୟୋତିର୍ବିଦ୍‌ଙ୍କ ବିଷୟରେ ଉଲ୍ଲେଖ ଥିବାରୁ ଓଡ଼ିଶା ବାହାର ଲୋକଙ୍କ ପାଖରେ ଏହା ଅବଗତ କରାଇବା ଉଚିତ ବୋଲି ଅନେକଙ୍କର ମତ ଥିଲା । ତେଣୁ ତା ୧୩.୪.୧୯୯୩ରେ ମହାବିଷୁବ ସଂକ୍ରାନ୍ତିରେ 'Rationale of Astrology'' ପୁସ୍ତକଟି ପ୍ରକାଶ ପାଇଥିଲା । ଓଡ଼ିଶା ଓ ଓଡ଼ିଶା ବାହାରେ ବିଭିନ୍ନ ପତ୍ର ପତ୍ରିକାରେ ଏହି ପୁସ୍ତକର ସମୀକ୍ଷା ବାହାରିଛି । ଏହି ପୁସ୍ତକର ଦ୍ୱିତୀୟ ସଂସ୍କରଣ ମଧ୍ୟ ଏପ୍ରେଲ ୧୯୯୬ରେ ପ୍ରକାଶ ପାଇଛି ।

ଓଡ଼ିଶାର କୃତୀ ସନ୍ତାନମାନଙ୍କ ଜାତକ ଓ ଜୀବନୀ, ୧ମ ଭାଗ ତା ୧୩.୯.୧୯୯୯ ଗଣେଶ ଚତୁର୍ଥୀ ଦିନ ମୋର ଅନ୍ୟ ଏକ ପୁସ୍ତକ ପ୍ରକାଶ ପାଇଥିଲା ।ଏଥିରେ ଓଡ଼ିଶାର ମହାପୁରୁଷ ଜଗନ୍ନାଥ ଦାସଙ୍କ ଠାରୁ ଆରମ୍ଭ କରି ଅନ୍ୟାନ୍ୟ ମହାପୁରୁଷ, ସାଧୁ,ସନ୍ଥ, ପଣ୍ଡିତ,

ଶିକ୍ଷାବିତ୍, କବି, ଲେଖକ, ସାମ୍ବାଦିକ, ଜ୍ୟୋତିର୍ବିଦ, ରାଜା, ମହାରାଜା,ସ୍ୱାଧୀନତା ସଂଗ୍ରାମୀ, ରାଷ୍ଟ୍ରପତି,ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ଶାସକ, ପ୍ରଶାସକ, ବିଧାୟକ, ସାଂସଦ, ଚିକିତ୍ସକ, ଆଇନିଜ୍ଞ ପ୍ରଭୃତି ବିଭିନ୍ନ ଦିଗରେ କୃତି ଅର୍ଜନ କରିଥିବା ଏକଶହ ବ୍ୟକ୍ତିଙ୍କର ଜାତକ ଓ ସଂକ୍ଷିପ୍ତ ଜୀବନୀ ଆଲୋଚନା ହୋଇଛି । ଏପରି ପୁସ୍ତକ ଓଡ଼ିଶାରେ ପ୍ରଥମ । ଏହାର ପୁସ୍ତକ ସମୀକ୍ଷା ଅନେକ ପତ୍ର ପତ୍ରିକାରେ ବାହାରିଛି । ସମସ୍ତେ ଉଚ୍ଚ ପ୍ରଶଂସା କରିଛନ୍ତି ।

୨୦୦୨ ଫେବୃୟାରୀ ୧୭ ତାରିଖ, ମାଘ, ଶୁକ୍ଳ, ସରସ୍ୱତୀ ପୂଜା, ରବିବାର ଦିନ ମୋର ଚତୁର୍ଥ ପୁସ୍ତକ "ଭାରତର ଏକ ଶହ କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ " ପ୍ରକାଶ ପାଇଛି । ଏହି ପୁସ୍ତକରେ ଭଗବାନ ଶ୍ରୀରାମ, ଶ୍ରୀକୃଷ୍ଣ, ଗୌତମ ବୁଦ୍ଧ, ମହାବୀର ଜୈନ, ଶଙ୍କରାଚାର୍ଯ୍ୟ, ମହାପୁରୁଷ, ସାଧୁ, ସନ୍ଥ, ସଂଗ୍ରାମୀ, ସାଂସଦ, ଚିକିତ୍ସକ, ଆଇନିଜ୍ଞ, ବୈଜ୍ଞାନିକ, ଜ୍ୟୋତିର୍ବିଦ୍, କଳାକାର,ଚିତ୍ର ତାରକା, ଖେଳାଳି ପ୍ରଭୃତିଙ୍କ ବିଷୟରେ ଜାତକ ସହିତ ସଂକ୍ଷିପ୍ତ ଜୀବନୀ ଆଲୋଚନା ହୋଇଛି । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ଏହାର ସମୀକ୍ଷା ବାହାରିଛି ।

**ମୋର ଚାରିଗୋଟି ପୁସ୍ତକର ସମୁଦାୟ ୪୭ଟି ସମୀକ୍ଷା ବିଭିନ୍ନ ସମୟରେ ଏବଂ ବିଭିନ୍ନ ପତ୍ର ପତ୍ରିକାରେ ଯାହା ପ୍ରକାଶ ପାଇଥିଲା ତାହା ଅବିକଳ ଭାବେ ପରିଶିଷ୍ଟ (୨)ରେ ଦିଆଯାଇଛି । ଏହି ସମୀକ୍ଷାରୁ ମୋର ପୁସ୍ତକ ସବୁ କିପରି ସମୂହ ଭାବେ ବୁଦ୍ଧିଜୀବୀ, ଜ୍ୟୋତିଷୀ ଏବଂ ଜନ ସାଧାରଣଙ୍କ ଦ୍ୱାରା ଆଦୃତ ହୋଇଛି ତାହା ଜଣାଯିବ । ମୋର ଇଂରାଜି ପୁସ୍ତକଟି ଓଡ଼ିଶା ବାହାରର ପ୍ରଖ୍ୟାତ ପ୍ରତିକାମାନଙ୍କ ଦ୍ୱାରା ମଧ୍ୟ ଉଚ୍ଚ ପ୍ରଶଂସିତ ହୋଇଛି ।**

ମୋର ଜୀବନର ଘଟଣାବଳୀର କିଛି ବିଶେଷତ୍ୱ ନାହିଁ । କିନ୍ତୁ ମୋର ଲେଖାର କିଛି ମୂଲ୍ୟ ଅଛି ବୋଲି ମୁଁ ମନେକରେ । ତେଣୁ ମୋର ପୁସ୍ତକ ବିଷୟରେ ଯାହାସବୁ ମତାମତ ବାହାରିଛି ତାହା ପଢ଼ିଲେ ମୋର ପରିଚୟ ପାଇବେ ।

ଉପରୋକ୍ତ ମତାମତ ଛଡ଼ା ଅନେକ ବ୍ୟକ୍ତିଙ୍କ ଠାରୁ ମୁଁ ଅନେକ ଚିଠି ପାଇଛି ଏବଂ ବ୍ୟକ୍ତିଗତ ପ୍ରଶଂସା ମଧ୍ୟ ପାଇଛି । ସେ ସବୁ ଏଠାରେ ଉଲ୍ଲେଖ କରିବାର ଅବକାଶ ନାହିଁ ।

ଜ୍ୟୋତିଷ ଭିତ୍ତିକ ଅନେକ ପ୍ରବନ୍ଧ ଓଡ଼ିଆ ଓ ଇଂରାଜିରେ ମୁଁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଛି । ଜାନୁୟାରୀ ୨୦୦୨ ସୁଦ୍ଧା ୧୧୦ ଟି ପ୍ରବନ୍ଧ ପ୍ରକାଶ ପାଇଛି ।

ଜ୍ୟୋତିଷ ଛଡ଼ା ରାଜନୈତିକ, ଧାର୍ମିକ ଓ ସାମାଜିକ ବିଷୟ ନେଇ ମଧ୍ୟ ମୋର ୪୫ ଟି ପ୍ରବନ୍ଧ ପ୍ରକାଶ ପାଇଲାଣି ।

ବିଭିନ୍ନ ସମସ୍ୟା ପ୍ରତି ମତାମତ ପ୍ରକାଶ କରି ସମ୍ପାଦକଙ୍କୁ ପତ୍ର ମାଧ୍ୟମରେ ବିଭିନ୍ନ ପତ୍ରିକାରେ ମୋର ପ୍ରାୟ ୨୦୦ଟି ଚିଠି ପ୍ରକାଶ ପାଇଛି । ଏହି ଚିଠିସବୁ ପଢ଼ି ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ମୁଁ ଅନେକ ଚିଠି ପାଇଛି । ଏଥିରେ ଧମକ ପୂର୍ଣ୍ଣ ଚିଠି ମଧ୍ୟ ଅଛି ।

ଉପରୋକ୍ତ ପ୍ରବନ୍ଧ ସବୁ ପୁସ୍ତକ ଆକାରରେ ଛାପିଲେ ଆହୁରି କେତେଖଣ୍ଡ ପୁସ୍ତକ ହୋଇଯିବ ।

ଜ୍ୟୋତିଷ ବିଷୟରେ ପୁସ୍ତକ ପ୍ରକାଶ ଏବଂ ବିଭିନ୍ନ ପତ୍ରପତ୍ରିକାରେ ପ୍ରବନ୍ଧ ପ୍ରକାଶ ପରେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ମତେ ସମ୍ମାନୀତ କରାଯାଇଛି । ୧୯୯୨ରେ ହାଇଦରାବାଦ ସ୍ଥିତ ଆନ୍ତର୍ଜାତିକ ଜ୍ୟୋତିଷ ସଂସ୍ଥା ପକ୍ଷରୁ "ଜ୍ୟୋତିଷ ବାଚସ୍ପତି" ୧୯୯୫ରେ "ନିୟତି" ଜ୍ୟୋତିର୍ବିଜ୍ଞାନ ମହାସଭା "ଜ୍ୟୋତିର୍ବିଦ୍ୟା ବିଶାରଦ" ୧୯୯୭ରେ ଏ.ଜି. ଅଫିସ ପେନ୍‌ସନ ଆସୋସିଏସନ୍ ଦ୍ୱାରା ସମ୍ମାନିତ , ୧୯୯୮ରେ ସାମନ୍ତ ଚନ୍ଦ୍ର ଶେଖର ପରିଷଦ "ଜ୍ୟୋତିର୍ବିଦ୍ୟା ବାଚସ୍ପତି" ଏବଂ ୨୦୦୧ରେ"ଭାଗ୍ୟଲିପି" ଅନୁଷ୍ଠାନ "ଜ୍ୟୋତିଷ ମାର୍ତ୍ତଣ୍ଡ" ଉପାଧିରେ ଅଳଙ୍କୃତ କରିଛନ୍ତି ।

ଜ୍ଞାନ ବିତରଣ କରିବା ଏକ ମହତ୍ କାର୍ଯ୍ୟ ଭାବି ମୁଁ ଲେଖାଲେଖି କରିଛି । ଏଥିରେ ମୁଁ ଆନନ୍ଦ ଲାଭ କରେ । ଦେଶ ଓ ସମାଜ ପାଇଁ ଅନ୍ୟକିଛି କରିପାରି ନାହିଁ । ଜୀବନର ଶେଷ ପର୍ଯ୍ୟାୟରେ ଏଇତକ କାମ କରିପାରିଥିବାରୁ ମୁଁ ସନ୍ତୋଷ ଲାଭ କରିଛି ।

ଏହି ପୁସ୍ତକଟି ନନାଙ୍କର ସଂପୂର୍ଣ୍ଣ ଜୀବନୀ ନୁହେ କି ମୋର ଆତ୍ମଜୀବନୀ ମଧ୍ୟ ନୁହେ । ଏଥିରେ ସବୁକଥା ଲେଖାଯାଇ ନାହିଁ । ଲେଖିବା ସମ୍ଭବ ମଧ୍ୟ ନୁହେଁ । କେତେକ ପ୍ରଧାନ ବିଷୟ ଭବିଷ୍ୟତ ବଂଶଧର ଯାହାଜାଣିବା ଉଚିତ, ଯାହା ଜାଣିଲେ କିଛି ଉପକାରରେ ଆସିବ ସେହିକଥା ଲେଖାଯାଇଛି । ଯଦି ଏଥିରୁ କେହି କିଛି ତଥ୍ୟ ଓ ପ୍ରେରଣା ପାଇ ଉପକୃତ ହୁଅନ୍ତି ତେବେ ମୋର ଉଦ୍ୟମ ସଫଳ ହେଲା ଭାବି ମୁଁ ଖୁସି ହେବି ।

ଭଗବାନ, ନନା ଓ ବୋଉଙ୍କ ଆଶୀର୍ବାଦ ନଥିଲେ କିଛି ହୁଅନ୍ତା ନାହିଁ । ନନା ଓ ବୋଉଙ୍କ ସ୍ମୃତି ଉଦ୍ଦେଶ୍ୟରେ ମୁଁ ଏହି ପୁସ୍ତକଟି ଅର୍ପଣ କରୁଛି ।



ନନାଙ୍କ ମହାମନ୍ତ୍ର ସ୍ମୃତି ସ୍ତମ୍ଭ ନିକଟରେ ଲେଖକ ।



ଶ୍ରୀ ଜଗନ୍ନାଥଙ୍କ ପାର୍ଶ୍ୱରେ ଲେଖକ ।



ନନାଙ୍କ ଜପ ଫଟୋ ।



ଲେଖକ ଓ ତାଙ୍କ ସ୍ତ୍ରୀ, ୧୯୮୩



ନନା, ସରୋଜ, ରୁନୁ ।



ନନା, ବୋଉ, ବସିଛି ମନୁ, ଠିଆ ହୋଇଛି ଶଶି ,୧୮.୧୧.୧୯୫୭



ବସିଛନ୍ତି ବାମରୁ ଡ଼ାହାଣ କୁନ୍ତଳା(ବଡ଼), କୁନ୍ତଳା(ସାନ), ଚୈତନ୍ୟ, ମନୁ । ଠିଆ ହୋଇଛନ୍ତିମୁନା, ଗୀତା, ଶଶି, ବାବୁଲି, ରୁନୁ ।(୧୦.୭.୧୯୬୮)



ନନା



ବସିଛନ୍ତି କୁନ୍ତଳା, ନନା, ଲେଖକ । ଠିଆ ହୋଇଛନ୍ତି ବାବୁଲି, ରୁନୁ, ସରୋଜ ।



ଲେଖକ (୧୯୪୫)



ବୁଲୁ, ଶ୍ୱଶୁର,
ମନୁ(୧୨.୭.୧୯୭୪)



ମଦନ, ସରୋଜିନୀ



ମଦନ(ଏନ୍.ସି.ସି. ପୋଷାକରେ)



ଲେଖକ ଓ ତାଙ୍କ ସ୍ତ୍ରୀ, ଚିକୁ



ଠିଆ ହୋଇଛନ୍ତି - ବାମରୁ ଡାହାଣ- ଟୁଟୁ, ବାବୁଲି, ବୁଲୁ, ମନୁ, ଲେଖକ, ତାଙ୍କ ସ୍ତ୍ରୀ, ଶଶି (କାଖରେ ରିତୁ), ଟିଟି, ରୁନୁ (କାଖରେ ସାଙ୍କି), ବସିଛନ୍ତି - ସିତୁ, ସୋମା, କୁନୁ, ରିଙ୍କୁ, ରକି



ଠିଆ ହୋଇଛନ୍ତି - ବାମରୁ ଡାହାଣ - ନିରୁ, ବାବୁଲି, ବୁଲୁ, ରକି, ସିତୁ, ସରୋଜ, ଶଶି, ଟିଟି
ବସିଛନ୍ତି - ମନ୍ନୁ, ଲେଖକ, ତାଙ୍କ ସ୍ତ୍ରୀ, ରୁନୁ, ତଳେ ବସିଛନ୍ତି - ସାଙ୍କି, ଚିକୁ, ରିଙ୍କୁ, ସୋମା, ରିତୁ

# ବିବିଧ ବିଷୟରେ ମୋର ଚିନ୍ତାଧାରା

ଦେଶର ଓ ସମାଜର ବିଭିନ୍ନ ସମସ୍ୟା ନେଇ ଅନେକ ସମୟରେ ମନରେ ଅନେକ ଭାବନା ଜାତ ହୋଇଥାଏ । ଦେଶ, ଧର୍ମ, ସଂସ୍କୃତି, ବେଦ, ପୁରାଣ, ଇତିହାସ, ସ୍ୱାଧୀନତା, ରାଜନୀତି, ଜନସଂଖ୍ୟା ବିସ୍ଫୋରଣ, ପରିବେଶ ପ୍ରଦୂଷଣ, ନିର୍ବାଚନ ପ୍ରଥା, ସଂଖ୍ୟାଗରିଷ୍ଠ ଓ ସଂଖ୍ୟାଲଘୁ ସମସ୍ୟା, ଓଡ଼ିଶା ଓ ଓଡ଼ିଆ ଓଡ଼ିଆ ଭାଷା ଜଗନ୍ନାଥ ଧର୍ମ ପ୍ରଭୃତି ବିଷୟରେ ତାତ୍ତ୍ୱିକ ଆଲୋଚନା କଲେ ପ୍ରତ୍ୟେକ ବିଷୟ ପାଇଁ ଗୋଟିଏ ସ୍ୱତନ୍ତ୍ର ପୁସ୍ତକ ଲେଖା ଯାଇ ପାରିବ । କିନ୍ତୁ ବିଷଦ ଭାବରେ ଏହାର ଆଲୋଚନା ନ କରି କେତୋଟି ମାତ୍ର ବିଷୟରେ ସାଧାରଣ ନାଗରିକ ଯାହା ଜାଣିବା କଥା ସେପରି ଏଠାରେ କିଛି ସଂକ୍ଷିପ୍ତ ଭାବରେ ଲେଖୁଛି । ଅବଶ୍ୟ ମୋ ମତ ଯେ ଠିକ୍ ତାହା ମୁଁ କହୁନାହିଁ, କିନ୍ତୁ ସାଧାରଣ ନାଗରିକ ଯାହା ଜାଣିବା କଥା ସେପରି ଏଠାରେ କିଛି ସଂକ୍ଷିପ୍ତ ଭାବରେ ଲେଖୁଛି । ସାଧାରଣ ଲୋକଙ୍କର ଚିନ୍ତାଧାରାରେ ଯଦି ଏହା କିଛି ଦିଗ୍‌ଦର୍ଶନ ଦିଏ ତେବେ ମୋର ଏହି ଆଲୋଚନାର କିଛି ଉପକାର ହୋଇପାରେ ।

## ଦେଶ ଓ ସମାଜ

ଆମର ଦେଶ ଭାରତ ବର୍ଷ କେତେ ମହାନ୍ ତାହା କଳ୍ପନାର ବାହାରେ । ସତ୍ୟଯୁଗର ରାଜା ଭରତଙ୍କ ନାମ ଅନୁସାରେ ଏହାର ନାମ ଭାରତ ବର୍ଷ ହୋଇଛି । ଏହି ଦେଶରେ ସର୍ବ ପ୍ରଥମେ ମାନବ ଜାତିର ଆବିର୍ଭାବ ଓ ସଭ୍ୟତାର ଆରମ୍ଭ ହୋଇ ଶୀର୍ଷ ସ୍ଥାନରେ ପହଞ୍ଚିଥିଲା । ଆଜିର ଭାରତବର୍ଷକୁ ପୃଥିବୀର ଅନ୍ୟ ଦେଶ ସଙ୍ଗେ ତୁଳନା କଲେ ଆମେ ଏହି ମର୍ଯ୍ୟାଦା ପୂର୍ଣ୍ଣ ଦେଶର ଦାୟାଦ ବୋଲି କହିବା ସଂକୋଚ ବୋଧ ହୁଏ । ଏହାର କାରଣ କ'ଣ ? ସେହି ହୃତ ଗୌରବର ପୁନରୁତ୍‌ଥାନ ସମ୍ଭବ କି ? ତାହା ବିଚାର କରି ଉଚିତ ପଦକ୍ଷେପ ନେବାର ସମୟ ଆସିଛି । ଦେଶ ପାଇଁ ଲୋକଙ୍କର ଚିନ୍ତା ନାହିଁ । ଆଜି ବ୍ୟକ୍ତି, ଦଳ, ଗୋଷ୍ଠୀ, ନେତା, ଜନସାଧାରଣ ସମସ୍ତେ ଆତ୍ମ କୈନ୍ଦ୍ରିକ । ଦେଶ ଓ ସମାଜର କାର୍ଯ୍ୟ ପାଇଁ ସମୟ ଦେବା ଓ ଜୀବନ ଉତ୍ସର୍ଗ କରିବା ପାଇଁ ଉତ୍ସାହ ନାହିଁ । ଦେଶର ଓ ସମାଜର ସମୂହ ପ୍ରଗତି ପାଇଁ ଉଦ୍ୟମ ନ କଲେ ଦେଶ ସମୃଦ୍ଧିଶାଳୀ ହେବ ନାହିଁ । ଆଜିକାଲି ଲୋକେ ବରାବର କହୁଛନ୍ତି ସରକାର ଆମ ପାଇଁ କ'ଣ କରୁଛି । କିନ୍ତୁ ଆମେ ଦେଶ ପାଇଁ କ'ଣ କରୁଛୁ ସେ ଚିନ୍ତା କାହାର ନାହିଁ । ସମାଜରେ ସୁଖ ଶାନ୍ତିରେ ଜୀବନ ଯାପନ କରିବାକୁ ହେଲେ ସାମୂହିକ ସାମାଜିକ ଭାବନା ଜାଗ୍ରତ ହେବା ଉଚିତ ଏବଂ ସମାଜ ପାଇଁ କିଛି କରିବା ଉଚିତ ।

ଭାରତୀୟ ଦର୍ଶନରେ ମାତୃଭୂମୀକୁ ସବୁଠାରୁ ପ୍ରାଧାନ୍ୟ ଦିଆଯାଇଛି । ମାନବ ସମାଜକୁ ସମଦର୍ଶନ ଭାବ ପୋଷଣ କରିବା ପାଇଁ ପରାମର୍ଶ ଦିଆଯାଇଛି । ''ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ  ନିରାମୟାଃ'' ଏବଂ'' ବସୁଧୈବ କୁଟମ୍ବକମ୍'', ଆମର ଆଦର୍ଶ । ଏହି ଆଦର୍ଶରେ ଅନୁପ୍ରାଣିତ ହେବା ଉଚିତ । ଦେଶ ଓ ସମାଜ ପାଇଁ କିଛି କରିବା ଉଚିତ । ଦେଶ ଓ ସମାଜର ସମସ୍ୟାରୁ ନିଜକୁ ନିଷ୍କ୍ରିୟ ରଖି ନିରବ ଦ୍ରଷ୍ଟା ହେବା ଉଚିତ ନୁହେଁ ।

## ଧର୍ମ

ଧର୍ମ ହେଉଛି ଭଗବତ୍ ପ୍ରାପ୍ତିର ମାଧ୍ୟମ, ଜୀବନ ଧାରଣର ଏକ ଶୈଳୀ । ଧର୍ମ ମନୁଷ୍ୟକୁ ପଶୁଠାରୁ ପୃଥକ୍ କରିଥାଏ । ଧର୍ମ ଛଡ଼ା ମନୁଷ୍ୟ ପଶୁତୁଲ୍ୟ ।

ଭାରତ ଏକ ଧର୍ମ ପ୍ରଧାନ ଦେଶ । ଭାରତୀୟମାନଙ୍କର ଧର୍ମର ନାମ ସନାତନ ଧର୍ମ ।ସନାତନର ଅର୍ଥ ସ୍ଥାୟୀ । ଏହି ଧର୍ମ ଅବିନଶ୍ୱର ଓ ଚିରନ୍ତନ । ଏହାର ବିଲୟ ନାହିଁ । ବିଦେଶୀମାନେ ଯେତେବେଳେ ଭାରତକୁ ବ୍ୟବସାୟ, ଭ୍ରମଣ, ଲୁଣ୍ଠନ ଓ ଅଧିକାର କରିବାକୁ ଆସିଲେ ସେମାନେ ଭାରତୀୟମାନଙ୍କୁ ହିନ୍ଦୁ ଏବଂ ଆମର ଧର୍ମକୁ ହିନ୍ଦୁ ଧର୍ମ ବୋଲି କହିଲେ । ଆମେ ମଧ୍ୟ ନିଜକୁ ହିନ୍ଦୁ ଏବଂ ଆମର ଧର୍ମକୁ ହିନ୍ଦୁ ଧର୍ମ ବୋଲି ମାନି ନେଲୁ ।

କ୍ରମେ ବିଦେଶୀମାନେ ଭାରତର ଶାସନ ଭାର ଅଧିକାର କରିନେଲେ । ଏଠାରେ ସ୍ଥାୟୀ ଭାବରେ ରହିଲେ । ଆମର ଅଶିକ୍ଷିତ ହିନ୍ଦୁଙ୍କୁ ବାଧ୍ୟବାଧକତା ଏବଂ ନାନା ଭାବରେ ପ୍ରଲୋଭିତ କରି ଧର୍ମାନ୍ତର କଲେ । କ୍ରମେ ଭାରତରେ ଅଣ ହିନ୍ଦୁ ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇଲା । ଶେଷରେ ଧର୍ମ ଭିତ୍ତିରେ ଭାରତ ଭାଗ ଭାଗ ହେଲା । ବିଧର୍ମୀମାନେ ଆମର ପଡ଼ୋଶୀ ରାଷ୍ଟ୍ର ହେଲେ ଏବଂ ଚିର ଶତ୍ରୁହୋଇ ରହିଲେ । ଭିବିଷ୍ୟତ ପାଇଁ ଏହା କଣ୍ଟକ ସଦୃଶ୍ୟ ରହିଲା ।

ହିନ୍ଦୁ ଧର୍ମରେ ଭଗବତ୍ ବିଶ୍ୱାସ ଓ ଉପାସନା ପଦ୍ଧତିରେ ଯେଉଁ ସ୍ୱାଧୀନତା ଅଛି ଅନ୍ୟ ଧର୍ମରେ ତାହା ନାହିଁ । ହିନ୍ଦୁଧର୍ମରେ ଶୈବ, ଶାକ୍ତ,ଗାଣପତ୍ୟ, ବୈଷ୍ଣବ, ସାକାର ଓ ନିରାକାର ବାଦୀ ଆଦି ଭିନ୍ନ ମତ ଥିଲେ ସୁଦ୍ଧା ଏମାନଙ୍କ ମଧ୍ୟରେ ସଂଘର୍ଷ ନାହିଁ କିନ୍ତୁ ବିଦେଶୀ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଅନେକ ଧର୍ମଯୁଦ୍ଧ ହୋଇଛି ଏବଂ ଆଜି ସୁଦ୍ଧା ସଂଘର୍ଷ ଓ ହିଂସା ଆଚରଣ ହେଉଛି ।

ହିନ୍ଦୁ ଧର୍ମର ସ୍ରଷ୍ଟା ବା ପ୍ରବର୍ତ୍ତକ କେହି ଜଣେ ନୁହଁନ୍ତି । ଅନେକ ମହାପୁରୁଷ, ମୁନି, ଋଷି, ସାଧୁ, ସନ୍ଥ ଏହି ଧର୍ମର ସ୍ରଷ୍ଟା । ସେହିପରି ଆମର ଧର୍ମଗ୍ରନ୍ଥ ମଧ୍ୟ ଅନେକ ।

ଅଣ ହିନ୍ଦୁ ଧର୍ମଗୁଡ଼ିକର ସ୍ରଷ୍ଟା ହେଉଛନ୍ତି ଗୋଟିଏ ଗୋଟିଏ ବ୍ୟକ୍ତି । ଧର୍ମ ଗ୍ରନ୍ଥ ମଧ ଗୋଟିଏ ଗୋଟିଏ । ଉକ୍ତ ଧର୍ମରେ ଦୃଢ଼ ଓ କଠୋର ମତ ପୋଷଣ କରାଯାଇଥାଏ । କେବଳ ସେହି ଧର୍ମର ମତ ହିଁ ଠିକ୍ ଏବଂ ଅନ୍ୟ ମତ ପୋଷଣ କରୁଥିବା ବ୍ୟକ୍ତିଙ୍କୁ ସେ କଠୋର ଦଣ୍ଡ ଦିଅନ୍ତି । ଏହି ଧର୍ମମାନଙ୍କରେ ଧର୍ମାନ୍ଧତା ପୂରି ରହିଛି । ଭିନ୍ନ ମତ ବ୍ୟକ୍ତ କରିବାର ଅଧିକାର ନାହିଁ ।

ଭଗବାନ ଓ ଧର୍ମରେ ବିଶ୍ୱାସ କରୁନଥିବା ବ୍ୟକ୍ତିଙ୍କୁ ନାସ୍ତିକ କୁହାଯାଏ । ଆଧୁନିକ ଯୁଗରେ ମାର୍କସ୍ ବାଦରେ ଭଗବାନ ଓ ଧର୍ମର ଅସ୍ତିତ୍ୱ ନାହିଁ । ଏମାନେ ନିଜକୁ ମାନବବାଦୀ କିମ୍ବା କର୍ମବାଦୀ ବୋଲି କୁହନ୍ତି । ଭଗବାନ ଓ ଧର୍ମରେ ଆସ୍ଥା ରଖିଲେ ମାନବବାଦ ଓ କର୍ମବାଦ ନ୍ୟୁନ ହେବା ପରିବର୍ତ୍ତେ ବୃଦ୍ଧି ହୋଇଥାଏ । ଏହା ସେମାନଙ୍କ ଚିନ୍ତା ଧାରାର ବାହାରେ । ଭଗବାନ ବିରୋଧୀ ହୋଇ ମାନବବାଦୀ ହେବା ସମ୍ଭବ ନୁହେଁ । କିଛି ଦିନ ମାର୍କସବାଦକୁ ଏକ ଆଦର୍ଶ ରୂପେ ବିଚାର କରାଯାଇଥିଲା । ଦୀର୍ଘ ୭୦ ବର୍ଷ ସୋଭିଏତ୍ ଋଷିଆରେ ମାର୍କସ୍ ଚିନ୍ତାଧାରା ପ୍ରଚଳନ ପରେ ତାର ପତନ ହୋଇଛି । ଲୋକେ ଭଗବତ୍ ବିଶ୍ୱାସୀ ହେଲେଣି । ଚର୍ଚ୍ଚ ଓ ମସଜିଦକୁ ଗଲେଣି । ଏପରିକି ଋଷିଆରେ ଇସ୍କନ୍‌ମାନେ ଶ୍ରୀକୃଷ୍ଣ ଚିନ୍ତାଧାରା ପ୍ରଚାର କଲେଣି ।

ଭଗବାନଙ୍କ ଠାରେ ପ୍ରଗାଢ଼ ବିଶ୍ୱାସ ରଖି,ଧର୍ମାଚରଣ କରି, ସତ୍ କର୍ମ, ସତ୍ ଚିନ୍ତା ଓ ସତ୍ ସଙ୍ଗ କରି ଜୀବନ ଯାପନ କଲେ ବ୍ୟକ୍ତି, ସମାଜ ଓ ଦେଶର ତଥା ସମଗ୍ର ପୃଥିବୀର ମଙ୍ଗଳ ହେବ ।

ଭାରତ ବର୍ଷକୁ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ନ କହି ବରଂ ଧର୍ମ ପ୍ରଧାନ ଦେଶ କହିବା ଉଚିତ । ଆଜିକାଲି ଧର୍ମ ନିରପେକ୍ଷତାକୁ ବିକୃତ ଅର୍ଥ କରାଯାଉଛି । ଭାରତରୁ ଯଦି ଧର୍ମକୁ ବାଦ ଦିଆଯିବ ତେବେ ତାହା ଆଉ ଭାରତ ବର୍ଷ ହୋଇ ରହିବ ନାହିଁ । ହିନ୍ଦୁମାନେ ଯଦି ଧର୍ମପ୍ରତି ନିଷ୍କ୍ରୀୟ ଓ ଉଦାସୀନ ରହନ୍ତି ତେବେ ହିନ୍ଦୁସ୍ଥାନ ଦିନେ କବ୍ର ସ୍ଥାନରେ ପରିଣତ ହେବ ।

ଜଗତରେ ପ୍ରଚଳିତ ସବୁ ଧର୍ମ ମଧ୍ୟରେ ହିନ୍ଦୁ ଧର୍ମ ଅତି ପ୍ରାଚୀନ ।

## ଧର୍ମଗ୍ରନ୍ଥ

ହିନ୍ଦୁ ଧର୍ମର ଧର୍ମଗ୍ରନ୍ଥ ଅନେକ । ଖ୍ରୀଷ୍ଟିଆନ୍ ଧର୍ମର ବାଇବେଲ ଏବଂ ଇସଲାମ ଧର୍ମର କୋରାନ ପରି ଗୋଟିଏ ଗୋଟିଏ ଧର୍ମ ଗ୍ରନ୍ଥ ମଧ୍ୟରେ ଆମର ଧର୍ମ ଦର୍ଶନ ସୀମାବଦ୍ଧ ନୁହେଁ । ହିନ୍ଦୁ ଧର୍ମର ସର୍ବପୁରାତନ ଧର୍ମଗ୍ରନ୍ଥ ହେଉଛି ବେଦ । ବେଦରେ ଧର୍ମ ସମ୍ବନ୍ଧୀୟ

ବିଷୟ ସହ ଅନ୍ୟାନ୍ୟ ବିଷୟ ଅଛି । ବେଦ ଉପରେ ଆଧାର କରି ଅନେକ ଉପନିଷଦ, ସିଦ୍ଧାନ୍ତ, ସଂହିତା,ସ୍ମୃତିଶାସ୍ତ୍ର ଆଦି ରଚିତ ହୋଇଛି । ବୈଦିକ ଯୁଗ ପରେ ପୁରାଣ ଯୁଗ ଆରମ୍ଭରେ ରାମାୟଣ, ମହାଭାରତ, ଅଷ୍ଟାଦଶ ପୁରାଣ ଏବଂ ଅନେକ ଉପପୁରାଣ ଗ୍ରନ୍ଥ ମଧ୍ୟ ରଚିତ ହୋଇଛି । ଏହି ସବୁ ଗ୍ରନ୍ଥରେ ହିନ୍ଦୁ ଧର୍ମ ବିଷୟରେ ବିସ୍ତୃତ ଆଲୋଚନା ଅଛି । ଭଗବଦ୍ ଗୀତାରେ ହିନ୍ଦୁ ଦର୍ଶନର ସାରାଂଶ ବ୍ୟକ୍ତ କରାଯାଇଛି । ଗୀତା ମହାଭାରତର ଏକ ଅଂଶ । ଧର୍ମ ବିଷୟରେ ଜାଣିବାକୁ ହେଲେ ରୁଚି ଅନୁସାରେ ଯେ କୌଣସି ଗ୍ରନ୍ଥ ଅଧ୍ୟୟନ କରାଯାଇପାରେ ।

ସେହିପରି ହିନ୍ଦୁଧର୍ମରେ ଦେବଦେବୀ ମଧ୍ୟ ଅନେକ । ଆମର ଦେବ ଦେବୀ ସବୁ ଭଗବାନଙ୍କର ବିଭିନ୍ନ ପରିପ୍ରକାଶ । ବ୍ୟକ୍ତି ନିଜର ରୁଚି ଅନୁସାରେ ଯେକୌଣସି ଦେବ ଦେବୀଙ୍କର ଉପାସନା କରିପାରେ । ଏହି ଅନେକତ୍ୱ ମଧ୍ୟରେ ଆମେ ଭଗବାନଙ୍କର ଏକତ୍ୱ ମଧ୍ୟ ବିଶ୍ୱାସକରୁ । ଏହା ଆମ ଧର୍ମ ଓ ଉପାସନାର ବୈଶିଷ୍ଟ୍ୟ ।

ବୈଦେଶିକ ଧର୍ମ ଦ୍ୱାରା ପ୍ରଭାବିତ କେତେକ ଲୋକେ ଆମର ଧର୍ମକୁ ଅନ୍ୟ ଧର୍ମ ସହିତ ତୁଳନା କରି ଆମର ଏକାଧିକ ଧର୍ମ ଗ୍ରନ୍ଥ ଏବଂ ଏକାଧିକ ଦେବ ଦେବୀ ଥିବା ଅସଙ୍ଗତ ମନେ କରନ୍ତି । ଏହା ବିଭ୍ରାନ୍ତ ବିଚାର ଧାରାର ପରିଚାୟକ । ତେଣୁ ଆମର ଏକାଧିକ ଧର୍ମ ଗ୍ରନ୍ଥ ଏବଂ ଦେବା ଦେବୀ ଥିବା ହେତୁ ଅନ୍ୟ ଧର୍ମତୁଳନାରେ ଆମେ ଗର୍ବ କରିବା ପରିବର୍ତ୍ତେ ହୀନମନ୍ୟତା ପ୍ରକାଶ କରିବା ଅନୁଚିତ ।

## ବେଦ

ହିନ୍ଦୁମାନଙ୍କର ମୂଳ ଗ୍ରନ୍ଥ ବେଦ । ପୃଥିବୀରେ ବେଦ ପୂର୍ବରୁ କୌଣସି ଗ୍ରନ୍ଥ ଆଜି ପର୍ଯ୍ୟନ୍ତ ଆବିଷ୍କାର ହୋଇନାହିଁ । ପୃଥିବୀର ଏହା ସର୍ବପ୍ରଥମ ପ୍ରାଚୀନତମ ଶ୍ରେଷ୍ଠ ଗ୍ରନ୍ଥ । ବେଦ କୌଣସି ଜଣେ ରଚନା କରି ନାହାନ୍ତି । ଆମର ପ୍ରାଚୀନ ମୁନି ଋଷିମାନେ ବେଦ ମନ୍ତ୍ରର ଦ୍ରଷ୍ଟା ଥିଲେ । ଏକାଧିକ ମୁନି ଓ ଋଷି ବେଦ ମନ୍ତ୍ରର ଦ୍ରଷ୍ଟା ଥିଲେ । ବେଦ ଅପୌରୁଷେୟ । ସ୍ୱୟଂ ଭଗବାନ ବେଦ ମନ୍ତ୍ରର ସ୍ରଷ୍ଟା । ଏହା ସ୍ୱୟଂ ଭଗବାନଙ୍କର ମୁଖ ନିର୍ଗତ ବାଣୀ । ମୁନି ଋଷିମାନେ ତାଙ୍କର ଅଲୌକିକ ପ୍ରତିଭା ଫଳରେ ଏହି ବେଦ ମନ୍ତ୍ରର ଦ୍ରଷ୍ଟାଥିଲେ । ପ୍ରଥମେ ଶିଷ୍ୟମାନେ ବେଦ ମନ୍ତ୍ର ଶୁଣି ମନେରଖୁଥିଲେ । ତେଣୁ ବେଦର ଅନ୍ୟ ନାମ ଶ୍ରୁତି ।

ମହର୍ଷି ପରାଶରଙ୍କର ସନ୍ତାନ ବେଦ ବ୍ୟାସ ବେଦ ମନ୍ତ୍ରର ସଂକଳନ କରି ବେଦକୁ ଋକ୍, ଯଜୁ, ସାମ ଓ ଅଥର୍ବ ଏହି ଚାରି ଭାଗରେ ବିଭକ୍ତ କରିଥିଲେ ।

ବେଦର ରଚନା କାଳ ନେଇ ବିଭିନ୍ନ ମତ ଅଛି । ପ୍ରାୟ ଖ୍ରୀଷ୍ଟପୂର୍ବ ଛଅ ହଜାର ବର୍ଷ ପୂର୍ବେ ବେଦ ରଚିତ ହୋଇଥିଲା । ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କ ମତରେ ବେଦ ଖ୍ରୀ.ପୂ ୪୫୦୦ ବର୍ଷ ପୂର୍ବେ ରଚିତ ହୋଇଥିଲା । ମାକ୍ସ ମୁଲାର୍‌ଙ୍କ ମତରେ ବେଦର ରଚନା କାଳ ଖ୍ରୀ.ପୂ ୧୫୦୦ ହେବାର ସମ୍ଭାବନା ।

ବେଦ ଜ୍ଞାନର ଭଣ୍ଡାର । ସମସ୍ତ ଜ୍ଞାନର ମୂଳ ଉତ୍ସ ହେଉଛି ବେଦ । ଏହା ଚିରନ୍ତନ । ଏହା ଯେତେ ପୁରାତନ ସେତେ ନୂତନ । ବେଦ ଜ୍ଞାନ କାଣ୍ଡ ଓ କର୍ମକାଣ୍ଡ ଏହି ଦୁଇ ଭାଗରେ ବିଭକ୍ତ । ଯଜ୍ଞାଦି କର୍ମମାନ କର୍ମକାଣ୍ଡର ଅନ୍ତର୍ଭୁକ୍ତ । ଧର୍ମତତ୍ତ୍ୱ, ଦର୍ଶନ, ବିଜ୍ଞାନ, ଗଣିତ, ଜ୍ୟୋତିର୍ବିଜ୍ଞାନ, ଆୟୁର୍ବିଦ୍ୟା,ଯୁଦ୍ଧ ବିଦ୍ୟା, ଆଦି ଜ୍ଞାନ କାଣ୍ଡର ଅନ୍ତର୍ଭୁକ୍ତ । ଆଧୁନିକ ଆକାଶଯାନ(ଉଡ଼ାଜାହାଜ), କ୍ଷେପଣାସ୍ତ୍ର(ରକେଟ୍), ଅଣୁ, ପରମାଣୁ ଆଦି ବିଷୟରେ ମଧ୍ୟ ବେଦରେ ଉଲ୍ଲେଖ ଅଛି । ଅଣୁ ତତ୍ତ୍ୱର ପ୍ରବର୍ତ୍ତକ ଥିଲେ ମହର୍ଷି କଣାଦ । ଆମ ଦେଶରେ ବେଦର ଚର୍ଚ୍ଚା ନ ହେବା ହେତୁ ସେ ବିଷୟରେ ଆମେ ଅଜ୍ଞ ।ଆମ ଦେଶରୁ ପୋଥି ସଂଗ୍ରହ କରି, ସଂସ୍କୃତ ଶିଖି, ତାହା ଇଂରାଜି, ଜର୍ମାନୀ ଭାଷାରେ ଅନୁବାଦକରି ପାଶ୍ଚାତ୍ୟ ଓ ଆମେରିକା ଲୋକେ ସେଥିରୁ ଆଧାତ୍ମିକ ଓ ବୈଷୟିକ ଜ୍ଞାନ ଆହରଣ କରୁଥିବା ବେଳେ, ଆମେ ଆମର ବେଦପ୍ରତି ଶ୍ରଦ୍ଧା ନାହିଁ । ବରଂ ବୈଦିକ ଗଣିତ, ବୈଦିକ ବିଜ୍ଞାନ, ବୈଦିକ ସଂସ୍କୃତି କଥା ପଡ଼ିଲେ ଲୋକେ ଅବଜ୍ଞା ପ୍ରକାଶ କରୁଛନ୍ତି । ବର୍ତ୍ତମାନ ସମୟ ଆସିଛି ଆମେ ଆମର ବେଦ ପ୍ରତି ଆଦର କରି ସେଥିରୁ ଜ୍ଞାନ ଆହରଣ କରିବା କର୍ତ୍ତବ୍ୟ । ଆଜି ମଧ୍ୟ ବେଦର ଆବଶ୍ୟକତା ଅଛି ।

## ପୁରାଣ

ବେଦ ଜନସାଧାରଣଙ୍କ ବୋଧଗମ୍ୟ ନ ହେବାରୁ ବେଦ ବ୍ୟାସ ଅଷ୍ଟାଦଶ ପୁରାଣ ରଚନା କରିଥିଲେ । ଏହି ପୁରାଣ ମଧ୍ୟରେ ରାମାୟଣ, ମହାଭାରତ ଓ ଭାଗବତ ସର୍ବଶ୍ରେଷ୍ଠ । ପୁରାଣ ପ୍ରଥମେ ସଂସ୍କୃତ ଭାଷାରେ ରଚିତ ହୋଇଥିଲା । କାଳକ୍ରମେ ତାହା ବିଭିନ୍ନ ପ୍ରାନ୍ତୀୟ ଭାଷାରେ ଅନୁବାଦ କରାଯାଇଛି ।

ପୁରାଣରେ ପ୍ରାଚୀନ କାଳରୁ ଭାରତର ବିଭିନ୍ନ ରାଜବଂଶର ଇତିହାସ ସହିତ ଦେଶର ପରିସ୍ଥିତି ବିଷଦ ଭାବରେ ବର୍ଣ୍ଣନା କରାଯାଇଛି । ଦେଶର ସମୃଦ୍ଧି, ଶିକ୍ଷା, ପରମ୍ପରା, ଧର୍ମଆଚରଣ, ସଂସ୍କୃତି, ଇତ୍ୟାଦି ସବୁ ବିଷୟ ପୁରାଣରୁ ଜଣାଯାଏ । ବିଭିନ୍ନ ଉପାଖ୍ୟାନ ଦେଇ ଜନସାଧାରଣଙ୍କର ମନୋରଞ୍ଜନ ହେବାଭଳି ବିଷୟ ପୁରାଣରୁ ମିଳେ ।

ଯେଉଁମାନେ ପୁରାଣ ପାଠକରିବାରେ ସକ୍ଷମ ନୁହଁନ୍ତି ସେମାନେ ପୁରାଣ ଶୁଣି କିମ୍ବା

ବିଭିନ୍ନ ଲୋକନୃତ୍ୟ ମାଧ୍ୟମରେ ପୁରାଣର ବିଷୟ ଅବଗତ ହେଉଛନ୍ତି । ପୁରାଣରୁ ଜନସାଧାରଣଙ୍କର ଧର୍ମାଚରଣ, ନୀତିଶିକ୍ଷା, ସାମାଜିକ ଦାୟିତ୍ୱ ଆଦି ବିଷୟ ଜାଣିପାରୁଥିଲେ । ଜନଜାଗରଣ ଓ ଜନଚେତନା ପାଇଁ ପୁରାଣ ଗ୍ରନ୍ଥର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଭଗବଦ୍ ଗୀତା ମହାଭାରତର ଅଂଶ ବିଶେଷ ହେଲେ ସୁଦ୍ଧା ଏହାର ସ୍ଥାନ ହିନ୍ଦୁ ଧର୍ମରେ ସର୍ବ ଶ୍ରେଷ୍ଠ । ମହାତ୍ମା ଗାନ୍ଧିଙ୍କ ମତରେ ଏକମାତ୍ର ଗୀତା ଯଦି ଅଧ୍ୟୟନ କରାଯାଏ ତେବେ ହିନ୍ଦୁ ଧର୍ମର ପରିଚୟ ଏଥିରୁ ମିଳିପାରିବ । ହିନ୍ଦୁ ଧର୍ମର ତତ୍ତ୍ୱ ଓ ଦର୍ଶନ ଏଥିରେ ବ୍ୟାଖ୍ୟା କରାଯାଇଛି । ଗୀତାର ପ୍ରଚଳନ ବ୍ୟାପକ, ପୃଥିବୀର ସବୁ ଭାଷାରେ ଗୀତାର ଅନୁବାଦ ଓ ତର୍ଜମା ହୋଇସାରିଛି ।

ଦୁଃଖର କଥା କେତେକ ଲୋକେ ଆମର ପୁରାଣର କେତେକ ବିଷୟକୁ ବିକୃତ ଅର୍ଥ କରନ୍ତି । ଦେଶ କାଳ ପରିସ୍ଥିତି ଅନୁସାରେ ହଜାର ହଜାର ବର୍ଷ ପୂର୍ବର କେତେକ ବିଷୟ ଆଜି ଅସଙ୍ଗତ ବୋଧ ହୋଇପାରେ । କିନ୍ତୁ ତାକୁ ଭୁଲ ବୁଝିବା କିମ୍ବା କଦର୍ଥ କରିବା ଅନୁଚିତ । ଆମର ପୁରାଣ ଗ୍ରନ୍ଥକୁ ଅବମାନନା କରିବା ଉଚିତ ନୁହେଁ । ଜନ ଚେତନା ଜାଗ୍ରତ କରିବାରେ ପୁରାଣର ଭୂମିକା ଗୁରୁତ୍ୱ ପୂର୍ଣ୍ଣ ।

## ଇତିହାସ

ଭାରତ ଇତିହାସ ଅତି ପ୍ରାଚୀନ, ଆମର ପୁରାଣରୁ ଆମେ ଭାରତର ପ୍ରାଚୀନ ଇତିହାସ ବିଷୟରେ ଜାଣିପାରୁ । ସେଥିମଧ୍ୟରୁ ରାମାୟଣ ଓ ମହାଭାରତ ପ୍ରଧାନ ।

ବର୍ତ୍ତମାନ ଯେଉଁ ଇତିହାସ ଆମେ ଆମର ଶିକ୍ଷାଅନୁଷ୍ଠାନମାନଙ୍କରେ ପଢୁ ସେଥିରେ ଲେଖା ଅଛି ଯେ, ଆର୍ଯ୍ୟମାନେ ଭାରତର ମୂଳ ବାସିନ୍ଦା ନୁହନ୍ତି । ସେମାନେ ଭାରତ ବାହାରୁ ଆସି ଏଠାରେ ବସବାସ କରୁଥିବା ପ୍ରାଚୀନ ଅଧିବାସୀ ଦ୍ରାବିଡ଼ମାନଙ୍କୁ ଦକ୍ଷିଣ ଭାରତକୁ ତଡ଼ି ଦେଇଥିଲେ ।

ପାଶ୍ଚାତ୍ୟ ଦେଶର ଐତିହାସିକମାନେ ଅଭିସନ୍ଧିମୂଳକ ମନୋଭାବ ରଖି ଏହି ମତ ପ୍ରଥମେ ଆରମ୍ଭ କରିଥିଲେ । ଆମର ଐତିହାସିକମାନେ ତାଙ୍କ ସହ ସ୍ୱର ମିଳାଇ ତାହା ସ୍ୱୀକାର କଲେ । ଏହି ମତକୁ ଭ୍ରାନ୍ତ ବୋଲି ବାଳଗଙ୍ଗାଧର ତିଳକ, ସ୍ୱାମୀ ବିବେକାନନ୍ଦ , ଶ୍ରୀ ଅରବିନ୍ଦ, ସ୍ୱାମୀ ଦୟାନନ୍ଦ ସରସ୍ୱତୀ ପ୍ରଭୃତି ଅନେକ ବୁଦ୍ଧିଜୀବୀ ଅକାଟ୍ୟ ତଥ୍ୟ ଉଦ୍ଧାର କରି ଖଣ୍ଡନ କରିଛନ୍ତି ।

ଆମେ ସ୍ୱାଧୀନ ହେବାର ୫୪ ବର୍ଷ ହୋଇଥିଲେ ସୁଦ୍ଧା ଆମର ଶିକ୍ଷା ଅନୁଷ୍ଠାନରେ

ବର୍ତ୍ତମାନ ଏଇ ଭୁଲ ଇତିହାସ ପଢ଼ାଯାଉଛି ଏବଂ ଆମ ଦେଶର କେତେକ ନ୍ୟସ୍ତ ସ୍ୱାର୍ଥ ରାଜନୈତିକ ଦଳ ଏହାକୁ ସତ୍ୟ ବୋଲି କହୁଛନ୍ତି । ଏହି ଭୁଲ ତଥ୍ୟର ସଂଶୋଧନ କରିବା ଉଦ୍ୟମକୁ ତୀବ୍ର ପ୍ରତିରୋଧ କରାଯାଉଛି । ଏହାଠାରୁ ବଳୀ ମାନସିକ ଦାସତ୍ୱ ଏବଂ ହୀନମନ୍ୟତାର ଉଦାହରଣ ଆଉ କ'ଣ ହୋଇପାରେ ।

## ସଂସ୍କୃତ

ସଂସ୍କୃତକୁ ହିନ୍ଦୁମାନେ ଦେବ ଭାଷାର ମାନ୍ୟତା ପ୍ରଦାନ କରନ୍ତି । ଦେବତାଙ୍କ ମୁଖ ନିଃସୃତ ବାଣୀକୁ ମୁନି ଋଷିମାନେ ତାଙ୍କର ଅଲୌକିକ ପ୍ରତିଭାବଳରେ ଏହି ସଂସ୍କୃତ ଭାଷାର ଦ୍ରଷ୍ଟା ଥିଲେ । ବେଦଠାରୁ ଆରମ୍ଭ କରି ଉପନିଷଦ, ପୁରାଣ, ଦର୍ଶନ,ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ଗଣିତ, ଚିକିତ୍ସାବିଜ୍ଞାନ, ପଦାର୍ଥ ବିଜ୍ଞାନ, ରାସାୟନିକ ବିଜ୍ଞାନ ଆଦି ସମସ୍ତ ଶାସ୍ତ୍ର ସଂସ୍କୃତରେ ରଚନା କରାଯାଇଥିଲା । ସଂସ୍କୃତ ପୃଥିବୀର ସମସ୍ତ ଭାଷାର ଜନନୀ । ଦିନ ଥିଲା ଯେତେବେଳେ ପୃଥିବୀର ସମସ୍ତ ମାନବ ସମାଜ ସଂସ୍କୃତ କହୁଥିଲେ । ସଂସ୍କୃତ ଠାରୁ ପୁରାତନ ଭାଷା ପୃଥିବୀରେ ନାହିଁ । ସଂସ୍କୃତରୁ ସମସ୍ତ ଭାଷାର ଉତ୍ପତ୍ତି । ୟୁରୋପ ଓ ଏସିଆର ଯେତେ ପୁରାତନ ଭାଷା ଅଛି ଏହି ସମସ୍ତ ଭାଷା ସଂସ୍କୃତରୁ ଜାତ । ସଂସ୍କୃତ ଭାଷା ଓ ସାହିତ୍ୟ ଆର୍ଯ୍ୟମାନଙ୍କର ଗୌରବର ପ୍ରତୀକ ।

ପରେ ଜନ ସଂଖ୍ୟା ବିକ୍ଷିପ୍ତ ହୋଇ ବିଭିନ୍ନ ଅଞ୍ଚଳରେ ରହିବା ଫଳରେ ଭିନ୍ନ ଭିନ୍ନ ଭଷା ଉଦ୍ଭାବନ ହୋଇଛି । କିନ୍ତୁ ଯେ କୌଣସି ଭାଷାରେ ସଂସ୍କୃତର ସତ୍ତା ପରିଲକ୍ଷିତ ହୁଏ ।

ସମଗ୍ର ଭାରତରେ ଦିନେ ସଂସ୍କୃତ ଭାଷା ଚଳୁଥିଲା । ଏହା କଥିତ ଓ ଲିଖିତ ଭାଷାଥିଲା । କାଳକ୍ରମେ ସଂସ୍କୃତରୁ ପାଲି ଓ ବିଭିନ୍ନ ଭାଷାର ଉତ୍ପତ୍ତି ହେଲା । ଭାରତର ଯେତେ ପ୍ରାନ୍ତୀୟ ଭାଷା ଅଛି ସେଥିରେ ସଂସ୍କୃତ ଶବ୍ଦ ଥିବା ଏହାର ପ୍ରମାଣ । ବର୍ତ୍ତମାନ ସୁଦ୍ଧା କର୍ଣ୍ଣାଟକର ଗୋଟିଏ ଗ୍ରାମର ଏବଂ ଅନ୍ୟ କେତେକ ସ୍ଥାନରେ ଗ୍ରାମର ପ୍ରତ୍ୟେକ ଲୋକ ସଂସ୍କୃତରେ କଥାବାର୍ତ୍ତା କରନ୍ତି ।

ଭାରତ ଯେତେବେଳେ ସ୍ୱାଧୀନ ଥିଲା ସେତେବେଳେ ରାଜା, ମହାରାଜା, ଜମିଦାର, ଧନୀ ବ୍ୟକ୍ତିମାନେ ସଂସ୍କୃତ ଭାଷାର ପୃଷ୍ଠପୋଷକ ଥିଲେ । ସଂସ୍କୃତ ରାଜ ଭାଷା ତଥା କଥିତ ଭାଷା ମଧ ଥିଲା । ସଂସ୍କୃତରେ ଅନେକ ମୂଲ୍ୟବାନ ଗ୍ରନ୍ଥ ଆମର ପଣ୍ଡିତ, କବି ଓ ଲେଖକମାନେ ରଚନା କରିଛନ୍ତି ।

ଭାରତ ପରାଧୀନ ହେବା ପରେ ସଂସ୍କୃତ ଭାଷାର ଅବନତି ହେଲା ।ବିଦେଶୀ ମୁସଲିମ୍ ଶାସକମାନେ ପାର୍ଶୀ ଏବଂ ବ୍ରିଟିଶମାନେ ଇଂରାଜି ଭାଷା ପ୍ରଚଳନ କଲେ ।

ରାଜକାର୍ଯ୍ୟ ମଧ୍ୟ ବିଦେଶୀ ଭାଷାରେ ପ୍ରଚଳନ ହେଲା । ରାଜ କର୍ମଚାରୀ ଏବଂ ଜନସାଧାରଣ ବିଦେଶୀ ଭାଷା ଶିଖିଲେ । ଶିକ୍ଷା ଅନୁଷ୍ଠାନମାନଙ୍କରେ ମଧ୍ୟ ବିଦେଶୀ ଭାଷାରେ ଶିକ୍ଷା ଦିଆଗଲା । ଦାସତ୍ୱ ମନୋଭାବ ହେତୁ ବିଦେଶୀ ଭାଷା ପ୍ରତି ଆଗ୍ରହ ବଢ଼ିଲା ।

ବିଦେଶୀ ଶାସକମାନେ ସଂସ୍କୃତକୁ ଘୃଣାକଲେ । ଅବଶ୍ୟ ଏଥିରେ କେତେ ବ୍ୟତିକ୍ରମ ମଧ୍ୟ ଥିଲା । କେତେକ ବିଦେଶୀ ବୁଦ୍ଧିଜୀବୀ ବହୁ କଷ୍ଟ କରି ସଂସ୍କୃତ ଶିଖିଥିଲେ ଏବଂ ଏହାର ମର୍ଯ୍ୟାଦା ବୃଦ୍ଧି କରିଥିଲେ । କିନ୍ତୁ ସାମୁହିକ ଦୃଷ୍ଟିରୁ ଦେଖିଲେ ସଂସ୍କୃତ ଭାଷାର ଅବନତି ସେମାନଙ୍କର ଲକ୍ଷ ଥିଲା । ବିଶିଷ୍ଟ ଇଂରେଜ ଶିକ୍ଷାବିତ୍ ମେକାଲେ ସଂସ୍କୃତକୁ ଘୃଣା ଚକ୍ଷୁରେ ଦେଖିଲେ । ଭାରତରେ ବିଦେଶୀ ଭାଷାର ପ୍ରଚଳନରେ ମେକାଲେଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଭାରତର ସମସ୍ତ ସଂସ୍କୃତ ସାହିତ୍ୟ ବ୍ରିଟେନ୍‌ରେ ଥିବା ଯେକୌଣସି ପାଠାଗାରର ଆଲମାରୀର ଗୋଟିଏ ଥାକ ସହିତ ସମାନ ନୁହେଁ ବୋଲି ସେ ତାଚ୍ଛଲ୍ୟ ପ୍ରକାଶ କରିଥିଲେ । ଏଥିରୁ ଜଣାଯାଏ ଯେ, ସେ ସଂସ୍କୃତ ସାହିତ୍ୟ ପ୍ରତି କିପରି ଅଜ୍ଞଥିଲେ ।

ଭାରତ ସ୍ୱାଧୀନ ହେବାପରେ ମଧ୍ୟ ଆମର ଇଂରଜି ଶିକ୍ଷିତ ବୁଦ୍ଧିଜୀବୀ ଓ ରାଜନୈତିକ ନେତୃବୃନ୍ଦଙ୍କ ସଂସ୍କୃତ ପ୍ରତି ବିଦ୍ୱେଷ ମନୋଭାବ ବଦଳି ପାରିଲା ନାହିଁ । ସଂସ୍କୃତକୁ ମୃତ ଭାଷା ବୋଲି କହିଲେ ।ସଂସ୍କୃତ ଭାଷାର ପ୍ରଚଳନ ଆମର ଶିକ୍ଷାଅନୁଷ୍ଠାନମାନଙ୍କରେ ବାଧ୍ୟତାମୂଳକ ଭାବେ ପ୍ରଚଳନ କରାଗଲା ନାହିଁ । ସଂସ୍କୃତ ଶିକ୍ଷାନୁଷ୍ଠାନଗୁଡ଼ିକୁ ମଧ୍ୟ ଉପଯୁକ୍ତ ମର୍ଯ୍ୟାଦା ଦିଆଗଲା ନାହିଁ । ଇଂରେଜ ଭାଷା ବଦଳରେ ଯେତେବେଳେ ଭାରତରେ ଏକ ରାଜଭାଷା ବା ସର୍ବସମ୍ମତ ଭାଷା ପ୍ରଚଳନ କରିବାର ବିଚାର ହେଲା ସେତେବେଳେ ସଂସ୍କୃତ ବଦଳରେ ହିନ୍ଦି ଭାଷାକୁ ଏହି ମାନ୍ୟତା ଦିଆଗଲା । ଏହି ପଦକ୍ଷେପ ହିନ୍ଦି ଓ ଅଣହିନ୍ଦି ଭାଷୀଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରି ନାନା ହିଂସା ଆଚରଣ ହୋଇଥିଲା । ସଂସ୍କୃତକୁ ଯଦି ରାଜଭାଷାର ମାନ୍ୟତା ଦିଆଯାଇଥାନ୍ତା ତେବେ ଏହି ଭାଷା ସମସ୍ୟା ହୋଇନଥାନ୍ତା ।

ଆମେରିକା, ଜର୍ମାନୀ, ଫ୍ରାନସ୍ ଏବଂ ବିଦେଶରେ ସଂସ୍କୃତ ଭାଷା ପ୍ରତି ଯେତେ ଆଦର ଆମ ଭାରତରେ ତାହା ଦେଖାଯାଏ ନାହିଁ । ବିଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ସଂସ୍କୃତ ଭାଷାରେ ଗବେଶଣା କରି ବୁଦ୍ଧିଜୀବୀମାନେ ଅନେକ ନୂତନ ଜ୍ଞାନର ଉଦ୍‌ଭାବନ କଲେଣି । ଦୁର୍ଭାଗ୍ୟର କଥା ସଂସ୍କୃତରେ ଗବେଷଣା କରିବା ପାଇଁ ଭାରତୀୟମାନେ ବିଦେଶ ବିଶ୍ୱବିଦ୍ୟାଳୟକୁ ଯାଉଛନ୍ତି । ଡ଼େରି ହେଲେ ସୁଦ୍ଧା ଆମର ସରକାର ସଂସ୍କୃତର ଉନ୍ନତି ପାଇଁ ଦୃଢ଼ ପଦକ୍ଷେପ ନେବେ ବୋଲି ଆଶା ।

ଦୁର୍ଭାଗ୍ୟର କଥା ଭାରତରେ ଥିବା କେତେକ ଅଣ ହିନ୍ଦୁ ସଂସ୍କୃତ ଭାଷାର ପ୍ରଚଳନ ହିନ୍ଦୁସାମ୍ରାଜ୍ୟର ବିସ୍ତାର ରୂପେ ଚିତ୍ରି କରୁଛନ୍ତି । ଅଥଚ ଉର୍ଦ୍ଦୁ ଓ ଇଂରେଜ ଭାଷାକୁ ତାଙ୍କର ମାତୃଭାଷା ବୋଲି କହୁଛନ୍ତି । ଏହା କ'ଣ ଦେଶ ପ୍ରେମର ସୂଚନା ?

# ଜ୍ୟୋତିଷ

ଜ୍ୟୋତିଷ ଶାସ୍ତ୍ରକୁ ବାଦ ଦେଇ ଭାରତୀୟ ସଂସ୍କୃତି ଓ ପରମ୍ପରା ଆଲୋଚନା କରାଯାଇନପାରେ । ଶିଶୁଟିର ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ ଷୋଡ଼ଶ ସଂସ୍କାର କରାଯାଏ ତାହା ଜ୍ୟୋତିଷ ଶାସ୍ତ୍ର ଅନୁସାରେ ହୋଇଥାଏ । ସେହିପରି ହିନ୍ଦୁମାନଙ୍କର ସମସ୍ତ ପର୍ବପର୍ବାଣୀ ପାଳନ, ସମୟ ନିର୍ଣ୍ଣୟ ଓ ଅନୁଷ୍ଠାନ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ହୋଇଥାଏ । ଜ୍ୟୋତିଷ ହିନ୍ଦୁ ଧର୍ମ ଓ ପରମ୍ପରା ସହିତ ଜଡ଼ିତ ।

ଆମର ପାଞ୍ଜି ହେଉଛି ବ୍ୟବହାରିକ ଜ୍ୟୋତିଷ ଶାସ୍ତ୍ର । ଜ୍ୟୋତିଷ ଶାସ୍ତ୍ରକୁ ଭିତ୍ତିକରି ଉପନୟନ, ବିବାହ, ବିଭିନ୍ନ ପର୍ବପର୍ବାଣି ପାଞ୍ଜିରେ ନିର୍ଣ୍ଣୟ ହୋଇଥାଏ । ପାଞ୍ଜିରେ ଯୋଗ ଲେଖାନଥିଲେ  କୌଣସି ହିନ୍ଦୁ ବ୍ରତୋପନୟନ କିମ୍ବା ବିବାହ କରନ୍ତି ନାହିଁ ଏବଂ ପାଞ୍ଜିରେ ନିର୍ଣ୍ଣୟ ଅନୁସାରେ ହିଁ ବିଭିନ୍ନ ପର୍ବପର୍ବାଣି ପାଳନ କରାଯାଇ ଥାଏ । ତେଣୁ ଆମର ପାଞ୍ଜି ମଧ୍ୟ ଗୋଟିଏ ଜ୍ୟୋତିଷ ଗ୍ରନ୍ଥ ।

ପାଞ୍ଜିରେ ପାଣିପାଗ, ବର୍ଷା, ମରୁଡ଼ି, ବାତ୍ୟା, ମହାମାରୀ, କୃଷି, ଦେଶରେ ହିଂସା, ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଉତ୍ଥାନ ପତନ, ବିପ୍ଳବ, ଆଦି ବିଭିନ୍ନ ବିଷୟରେ ମଧ୍ୟ ଭବିଷ୍ୟତ ବାଣୀ କରାଯାଇଥାଏ । ବୈଜ୍ଞାନିକ ପଦ୍ଧତିରେ ଆମର ପାଣିପାଗ ସଂସ୍ଥା ଯେଉଁ ଭବିଷ୍ୟତ ବାଣୀ କରନ୍ତି ବେଳେବେଳେ ତାହା ଠିକ୍ ନ ହୋଇ  ପାଞ୍ଜିରେ ଭବିଷ୍ୟବାଣୀ କରିଥିବା କଥା ଠିକ୍ ହୁଏ । ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ଓଡ଼ିଶାର ପାଞ୍ଜି ସଂସ୍କାର କରିଯାଇଛନ୍ତି । ବର୍ତ୍ତମାନ ତାହା ପ୍ରଚଳିତ ।

କେତେକଙ୍କର ମତ ଯେ ଏଷ୍ଟ୍ରୋନମି ବା ଅନ୍ତରୀକ୍ଷ ବିଜ୍ଞାନ ପ୍ରକୃତ ବିଜ୍ଞାନ ସମ୍ମତ ଏବଂ ଏଷ୍ଟ୍ରୋଲଜି ବା ଫଳିତ ଜ୍ୟୋତିଷ ବିଜ୍ଞାନ ସମ୍ମତ ନୁହେଁ । ଫଳିତ ଜ୍ୟୋତିଷ ଭ୍ରାନ୍ତ ଏବଂ କେବଳ ଅନ୍ଧ ବିଶ୍ୱାସ ଉପରେ ଆଧାରିତ ବୋଲି କହନ୍ତି । ଫଳିତ ଜ୍ୟୋତିଷର ଭବିଷ୍ୟତ ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ ହେବାର ଅସଂଖ୍ୟ ପ୍ରମାଣ ଅଛି । ଅନେକ ମହାପୁରୁଷ ମଧ୍ୟ ଏହାକୁ ସ୍ୱୀକାର କରିଛନ୍ତି ।

ବେଦରେ ଜ୍ୟୋତିଷ ଉଲ୍ଲେଖ ଅଛି । ମୂହୁର୍ତ୍ତ ହେଉଛି ଜ୍ୟୋତିଷର ମୂଳ ଭିତ୍ତି । ବୈଦିକ ଯଜ୍ଞ ଆଦି କର୍ମକାଣ୍ଡ ଶୁଭ ମୂହୂର୍ତ୍ତରେ ହେଉଥିଲା । ବୈଦିକ ଯୁଗରୁ ବେଦାଙ୍ଗ ଜ୍ୟୋତିଷ, ବିଭିନ୍ନ ସିଦ୍ଧାନ୍ତ, ସଂହିତା ଓ ହୋରା ଶାସ୍ତ୍ର ଆମର ମୁନିଋଷିମାନେ ରଚନା କରିଥିଲେ । ଜ୍ୟୋତିଷ ଶାସ୍ତ୍ରର ଜନକ ହେଇଛନ୍ତି ମହର୍ଷି ପରାଶର ।

ପ୍ରାଚୀନ କାଳରେ ଭାରତରେ ଜ୍ୟୋତିଷ ବିଦ୍ୟାର ଆଦର ଥିଲା । ରାଜା

ମହାରାଜାମାନେ ତାଙ୍କର ଦରବାରରେ ଜ୍ୟୋତିର୍ବିଦମାନଙ୍କୁ ରଖି ତାଙ୍କର ପରାମର୍ଶ ନେଉଥିଲେ । ବିଦେଶୀ ଶାସନ କାଳରେ ଜ୍ୟୋତିଷ ଚର୍ଚ୍ଚାର ଆଦର କମିଗଲା ।

ବର୍ତ୍ତମାନ ଆମର ଶିକ୍ଷା ଅନୁଷ୍ଠାନମାନଙ୍କରେ ଜ୍ୟୋତିଷ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ କରିବାର ଉଦ୍ୟମ ହେଲାବେଳେ ତାର ତୀବ୍ର ପ୍ରତିବାଦ ହେଉଛି । ଜାତି,ଧର୍ମ, ଧନୀ, ଗରୀବ, ନେତା, ସାଧାରଣ ଜନତା ନିର୍ବିଶେଷରେ ସମସ୍ତେ ଜ୍ୟୋତିଷୀମାନଙ୍କର ପରାମର୍ଶ ନିଅନ୍ତି । ତଥାପି ତାକୁ ମାନ୍ୟତା ଦେଲାବେଳେ କୁଣ୍ଠାବୋଧ କରନ୍ତି । ବିଶେଷତଃ ପ୍ରତ୍ୟେକ ରାଜନୈତିକ ନେତା ନିର୍ବାଚନରେ ଜୟ ଲାଭ କରିବେ କି ନାହିଁ, ମନ୍ତ୍ରୀ ହେବେକି ନାହିଁ ଇତ୍ୟାଦି ବିଷୟରେ ଉତ୍କଣ୍ଠା ପ୍ରକାଶ କରି ଜ୍ୟୋତିଷୀଙ୍କୁ ପରାମର୍ଶ କରନ୍ତି । କିନ୍ତୁ ପ୍ରକାଶରେ ତାହା ମାନିବାକୁ ପ୍ରସ୍ତୁତ ନୁହନ୍ତି । ଏହା ଆତ୍ମ ପ୍ରବଞ୍ଚନ ଛଡ଼ା ଅନ୍ୟ କିଛି ନୁହେଁ ।

## ସଂସ୍କୃତି

ଜନ ସାଧାରଣଙ୍କ ଜୀବନଯାପନର ସାମୂହିକ ପଦ୍ଧତି ଏବଂ ଯାହା ପରମ୍ପରା କ୍ରମେ ସମାଜରେ ଚଳିଆସୁଛି ତାକୁ ସଂସ୍କୃତି କୁହାଯାଏ । ଆର୍ଯ୍ୟ ସଂସ୍କୃତି, ହିନ୍ଦୁ ସଂସ୍କୃତି ବା ଭାରତୀୟ ସଂସ୍କୃତି ଅତି ପ୍ରାଚୀନ ଓ ମହୀୟାନ୍ । ଦୀର୍ଘ କାଳ ଧରି ଏହି ସଂସ୍କୃତିକୁ ଆମେ ଉଜ୍ଜୀବିତ କରି ରଖିଛୁ । ଆମେ ,ହିନ୍ଦୁ ସଂସ୍କୃତିର ଦାୟାଦ । ଭାରତୀୟ ସଂସ୍କୃତିରେ ଆଧ୍ୟାତ୍ମିକ ଭାବ ପରିସ୍ଫୁଟ ।

ଆଧୁନିକ ଯୁଗରେ ଆମର ସଂସ୍କୃତିର ଏକ ବିରାଟ ପରିବର୍ତ୍ତନ ଦେଖା ଦେଲାଣି । ଆଜିକାଲିର ଆଚରଣ ଆମ ସଂସ୍କୃତିକୁ ନଷ୍ଟ କଲାଣି । ମାନବିକ ମୂଲ୍ୟବୋଧ କଳୁଷିତ ହେଲାଣି ।

ଦୀର୍ଘ କାଳ ହେଲା ଭାରତ ବିଦେଶୀଶାସନରେ ଥିବାରୁ ସେହି ସଂସ୍କୃତିର ପ୍ରଭାବ ଆମକୁ କବଳିତ କରିଛି । ଆମେ ଆମର ନବବର୍ଷ, ତିଥି ସବୁ ଭୁଲିଗଲୁଣି । ଆମର ନବ ବର୍ଷରେ ଗ୍ରୀଟିଙ୍ଗସ୍ କାର୍ଡ଼ ବିକ୍ରି ହୁଏ ନାହିଁ । ଜାନୁୟାରୀ ପହିଲା, ଅପ୍ରେଲ ପହିଲା,ଖ୍ରୀଷ୍ଟମାସ୍, ଗୁଡ୍ ଫ୍ରାଇଡ଼େ, ଭେଲେନ୍‌ଟାଇନ୍ ଡ଼େ ଇତ୍ୟାଦି ପାଳନ କରୁଛୁ । ନେତୃସ୍ଥାନୀୟ କୌଣସି ରାଜନୈତିକ ବ୍ୟକ୍ତି ଇଫତାର ପାର୍ଟି ପାଳନ କରିବା ଭୁଲନ୍ତି ନାହିଁ । ଆମର ନବବର୍ଷ ପାଳନ ନ କରି ପାଶ୍ଚାତ୍ୟ ନବବର୍ଷ ପାଳନ କରୁଛୁ । ଶିଶୁର ଜନ୍ମଦିବସ, ମୃତ ବ୍ୟକ୍ତିଙ୍କର ଶ୍ରାଦ୍ଧ ପାଳନ ପାଇଁ ଜନ୍ମ ନକ୍ଷତ୍ର ଏବଂ ଦେହାନ୍ତ ତିଥି ଅନୁସାରେ ପାଳନ ନକରି ଇଂରେଜି ତାରିଖ ଅନୁସାରେ ପାଳନ କଲୁଣି । ହାତ ଯୋଡ଼ି ନମସ୍କାର କିମ୍ବା ନତ ମସ୍ତକ ହୋଇ ପ୍ରଣିପାତ କରିବା ବଦଳରେ ଗୁଡ୍ ମର୍ଣ୍ଣିଙ୍ଗ, ଗୁଡ୍ ଇଭନିଙ୍ଗ, ଗୁଡ୍ ନାଇଟ୍ କିମ୍ବା ଟାଟା, ବାଇ, ହାଇ, ହାଲୋ ଇତ୍ୟାଦି କରୁ ।

ଆମର ପୋଷାକ ପରିଛଦ, ଚାଲିଚଳନ ସବୁ ପାଶ୍ଚାତ୍ୟ ରୀତିନୀତି ଦ୍ୱାରା ପ୍ରଭାବିତ । ଆଗେ ଲୋକେ ଲୁଚାଇ ମଦ୍ୟପାନ କରୁଥିଲେ । ବର୍ତ୍ତମାନ ସମସ୍ତଙ୍କୁ ଦେଖାଇ ପିଇବା ଏକ ଆଭିଜାତ୍ୟ ମନେହେଲାଣି । ଭୋଜି, ପିକ୍‌ନିକ୍‌ରେ ମଦ୍ୟପାନର ବ୍ୟବସ୍ଥା ନଥିଲେ ତାହା ପ୍ରଶଂସିତ ହେଉ ନାହିଁ । ମଦ ଦୋକାନ ଅବାଧରେ ଖୋଲାଯାଉଛି । ପ୍ରିନ୍‌ସିପାଲ୍ ଯଦି କଲେଜରେ ଝିଅପିଲାଙ୍କର ପୋଷାକ ପ୍ରତି କଟକଣା କରନ୍ତି ତେବେ ସେ ତିଷ୍ଠିବା ସମ୍ଭବ ନୁହେଁ ।

ଅପ ସଂସ୍କୃତି ଶିଖେଇବାରେ ସିନେମା ଓ ଦୂରଦର୍ଶନର ଭୂମିକା ସବୁଠାରୁ ଅଧିକ । ଦାଡ଼ି, ମାମି କହିବା, ମଦ୍ୟପାନ, ଚୋରୀ, ଡ଼କାୟତି, ସ୍ତ୍ରୀ ଲୋକଙ୍କର ସଂକୁଚିତ ପୋଷାକ ପିନ୍ଧିବା, ଉଲଗ୍ନ ଶରୀର ଦେଖେଇ ହେବା ଇତ୍ୟାଦି ଲୋକେ ଦେଖି ତାହା ଅନୁକରଣ କରୁଛନ୍ତି । ସିନେମାର ପ୍ରଚଳନ ଏପରି ବ୍ୟାପକ ଓ ପ୍ରଭାବଶାଳୀ ଯେ ତାହା ସଂଯତ କରିବା ସରକାରଙ୍କ କ୍ଷମତା ବାହାରେ । ଦୂରଦର୍ଶନରେ ବିଜ୍ଞାପନରୁ ଅର୍ଥ ଆଦାୟ କରିବା ପ୍ରଲୋଭନରୁ କ୍ଷାନ୍ତ ହେବା ମଧ୍ୟ ସମ୍ଭବ ନୁହେଁ । ଏହାର ଗତି କିପରି ବଦଳିବ ତାହା ଚିନ୍ତାର ବିଷୟ । ଏହି ଉଭୟ ସଂସ୍ଥାକୁ ସଂଯତ ନ କଲେ ଦେଶ ଓ ସମାଜ ସଂପୂର୍ଣ୍ଣ ଧ୍ୱଂସ ମୁଖରେ କବଳିତ ହେବା ଅବଶ୍ୟମ୍ଭାବି ।

ଭାରତୀୟ ସଂସ୍କୃତିର ପୁନର୍ଜାଗରଣ ଆମର ଲକ୍ଷ ହେବା ଉଚିତ୍ ।

## ସଂବିଧାନ

ଭାରତ ସ୍ୱାଧୀନ ହେବା ପରେ ଲୋକପ୍ରତିନିଧିମାନେ ସଂବିଧାନ ପ୍ରଣୟନ ସଭା ଗଠନ କରି ଗୋଟିଏ ସଂବିଧାନ ପ୍ରସ୍ତୁତ କରି ତା ୨୬.୧.୧୯୫୦ରୁ ତାହା କାର୍ଯ୍ୟାକାରୀ କରିଥିଲେ । ସେହି ସଂବିଧାନ ଅନୁସାରେ ବର୍ତ୍ତମାନ ଶାସନ ଚାଲିଛ ।

ସଂବିଧାନରେ ଚାକିରିରେ ସ୍ଥାନ ସଂରକ୍ଷଣ, ସଂଖ୍ୟାଲଘୁଙ୍କ ପାଇଁ ସ୍ୱତନ୍ତ୍ର ସାମାଜିକ ବ୍ୟବସ୍ଥା ଏବଂ କାଶ୍ମୀରକୁ ପରିସ୍ଥିତି ଦୃଷ୍ଟିରୁ କେତେକ ସ୍ୱତନ୍ତ୍ର ସୁବିଧା ଅସ୍ଥାୟୀ ଭାବେ ଦିଆଯାଇଥିଲା ।କିନ୍ତୁ ସେହି ଅସ୍ଥାୟୀ ବ୍ୟବସ୍ଥା ବର୍ତ୍ତମନେ ସ୍ଥାୟୀ ହେବାକୁ ଯାଉଛି । ଏହି ଅସ୍ଥାୟୀ ବ୍ୟବସ୍ଥାକୁ ଉଠାଇବା ପାଇଁ କହିବା କୌଣସି ରାଜନୈତିକ ଦଳର ସତ୍‌ସାହସ ନାହିଁ ।

ସଂବିଧାନର ମୁଖବନ୍ଧରେ ଭାରତ ଏକ ସାର୍ବଭୌମ, ଗଣତାନ୍ତ୍ରିକ, ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ପରିଚିତ ଥିଲା । ୧୯୭୬ରେ ଯେତେବେଳେ ଜରୁରୀକାଳୀନ ବ୍ୟବସ୍ଥା ଥିଲା ସେତେବେଳେ ସଂବିଧାନର ୪୨ତମ ସଂଶୋଧନ ଦ୍ୱାରା ଏହି ମୁଖବନ୍ଧରେ ଦୁଇଟି ଶବ୍ଦ

''ଧର୍ମନିରପେକ୍ଷ'' ଏବଂ ''ସମାଜବାଦ'' ଯୋଡ଼ିଦିଆଗଲା । ଏହି ଧର୍ମ ନିରପେକ୍ଷ ଶବ୍ଦଟି ବର୍ତ୍ତମାନ ହିନ୍ଦୁବିରୋଧୀ ରୂପେ ବ୍ୟବହୃତ ହେଉଛି ।

ସଂବିଧାନରେ ଭବିଷ୍ୟତ କାର୍ଯ୍ୟ ନିର୍ଦ୍ଧାରଣ ପାଇଁ ସମସ୍ତଙ୍କ ପାଇଁ ଏକ ପ୍ରକାର ସାମାଜିକ ଆଇନ, ଗୋରକ୍ଷା, ନିଶାନିବାରଣ ଆଦି କେତେକ ଲୋକହିତକର କାର୍ଯ୍ୟ ପ୍ରଚଳନ ପାଇଁ ନିର୍ଦ୍ଦେଶଥିଲେ ସୁଦ୍ଧା ସେଥିପ୍ରତି ଅନୁକୂଳ ଆଇନ ପ୍ରଣୟନ ପରିବର୍ତ୍ତେ ତାର ବିପରିତ ଉଦ୍ଦେଶ୍ୟ ଆଭିମୁଖ୍ୟରେ ପଦକ୍ଷେପ ନିଆଯାଉଛି । ସମସ୍ତଙ୍କ ପାଇଁ ଏକ ପ୍ରକାର ସାମାଜିକ ଆଇନ ହେଉ ନାହିଁ । ଗୋହତ୍ୟା ବନ୍ଦ କରିବା ପରିବର୍ତ୍ତେ ଅଧିକରୁ ଅଧିକ ଗୋମାଂସ ରପ୍ତାନି ହେଉଛି ।

ଦେଶରେ ଜାତି ପ୍ରଥା ଲୋପ ପାଇଁ ଆମର ପୁରାଣ ଯୁଗରୁ ଆରମ୍ଭ କରି ଅନେକ ସାଧୁ,ସନ୍ଥ, ବୁଦ୍ଧିଜୀବୀ ଅନେକ ପଦକ୍ଷେପ ନେଇଥିଲେ । ଜଗନ୍ନାଥ ଓ ଜଗନ୍ନାଥ ଧର୍ମ ଜାତିପ୍ରଥା ଲୋପର ଏକ ଦୃଢ଼ ପଦକ୍ଷେପ । ଫଳରେ ଜାତିପ୍ରଥା କ୍ରମେ ଲୋପପାଇ ଆସୁଥିଲା । କିନ୍ତୁ ସଂବିଧାନରେ ଜାତି ଅନୁସାରେ ଚାକିରିରେ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ହେତୁ ତାହା ଆଇନର ମାନ୍ୟତା ଲାଭ କଲା ଏବଂ ଚିରସ୍ଥାୟୀ ହେଲା । ଉପରୋକ୍ତ ପଦକ୍ଷେପ ସଂବିଧାନର ନିରପେକ୍ଷ ମର୍ଯ୍ୟାଦା ରକ୍ଷା କରୁଛି କି ?

# ରାଜନୀତି

ପ୍ରାଚୀନ କାଳରୁ ରାଜାମାନଙ୍କ ଦ୍ୱାରା ଦେଶରେ ଶାସନ ଚଳୁଥିଲା । ଏହାକୁ ରାଜତନ୍ତ୍ର କୁହାଯାଉଥିଲା । ରାଜାଙ୍କର ଶାସନ ଲୋପ ହେଲା ପରେ ଦେଶରେ ଗଣତନ୍ତ୍ର ଶାସନ ପ୍ରଚଳନ ହେଲା । ଗଣତନ୍ତ୍ର ଶାସନ ଲୋକପ୍ରତିନିଧିଙ୍କ ଦ୍ୱାରା ପରିଚାଳିତ ହୋଇଥାଏ । ଲୋକ ପ୍ରତିନିଧିମାନେ ସାଧାରଣତଃ ବିଭିନ୍ନ ରାଜନୈତିକ ଦଳର ବ୍ୟକ୍ତି ହୋଇଥାନ୍ତି । ଗଣତନ୍ତ୍ର ଶାସନ ପରିଚାଳନା ପାଇଁ ରାଜନୈତିକ ଦଳଙ୍କ ଆବଶ୍ୟକତା ଅପରିହାର୍ଯ୍ୟ । ଏହାର ବିକଳ୍ପ ନାହିଁ ।

ଭାରତରେ କେନ୍ଦ୍ରଶାସନ ପାର୍ଲିଆମେଣ୍ଟ ଏବଂ ରାଜ୍ୟଶାସନ ବିଧାନ ସଭା ଦ୍ୱାରା ଗଠିତ ମନ୍ତ୍ରୀମଣ୍ଡଳ ଦ୍ୱାରା ପରିଚାଳିତ ହୋଇଥାଏ । ପାର୍ଲିଆମେଣ୍ଟ ଓ ବିଧାନ ସଭାକୁ ସାଂସଦ ଓ ସଦସ୍ୟମାନେ ଜନସାଧାରଣଙ୍କ ଭୋଟରେ ନିର୍ବାଚିତ ହୋଇଥାନ୍ତି । ଏମାନେ ସାଧାରଣତଃ ବିଭିନ୍ନ ରାଜନୈତିକ ଦଳର ହୋଇଥାନ୍ତି । ଯେଉଁ ରାଜନୀତି ଦଳ ସଂଖ୍ୟା ଗରିଷ୍ଠ ଲାଭ କରନ୍ତି ସେମାନଙ୍କ ଦ୍ୱାରା ମନ୍ତ୍ରୀମଣ୍ଡଳ ଗଠିତ ହୁଏ ଏବଂ ଶାସନ ତାଙ୍କ ଦ୍ୱାରା ପରିଚାଳିତ ହୁଏ ।

ପ୍ରଥମେ ବୁଦ୍ଧିଜୀବୀ ଓ ଦେଶପ୍ରେମୀ ବ୍ୟକ୍ତି ରାଜନୀତିରେ ଯୋଗ ଦେଉଥିଲେ । ବର୍ତ୍ତମାନ ଏମାନେ ରାଜନୀତିରେ ଭାଗ ନେବାକୁ ପସନ୍ଦ କରୁନାହାନ୍ତି । ବର୍ତ୍ତମାନ ଦେଶର ରାଜନୀତି ସାଂପ୍ରଦାୟିକତା, ଜାତିଆଣ, ପ୍ରାଦେଶିକତା, ଆଞ୍ଚଳିକ ସ୍ୱାର୍ଥ, ଗୋଷ୍ଠୀ ମନୋଭାବ ଦ୍ୱାରା ପରିଚାଳିତ ହେଲାଣି । ସାଂସଦ ଓ ବିଧାୟକମାନେ ଧନ, ବାହୁବଳ, ଧର୍ମ, ଜାତି, ଭାଷା, ଆଞ୍ଚଳିକତା ଇତ୍ୟାଦି ସଂକୀର୍ଣ୍ଣ ସ୍ୱାର୍ଥନୀତି ପ୍ରୟୋଗ କରି ଜନସାଧାରଣଙ୍କୁ ବିଭ୍ରାନ୍ତ କରି ନିର୍ବାଚିତ ହେଉଛନ୍ତି । ଦେଶର ସ୍ୱାର୍ଥ ଅପେକ୍ଷା ନିଜର ସ୍ୱାର୍ଥ ହାସଲ ତାଙ୍କର ମୂଳ ଲକ୍ଷ ହୋଇଥାଏ । ତେଣୁ କାଳକ୍ରମେ ରାଜନୀତି କଳୁଷିତ ହେଲାଣି ।

ଦେଶର ଜନସାଧାରଣ ଶିକ୍ଷିତ ଓ ସଚେତନ ହୋଇ ଦେଶର ସମୂହ ସ୍ୱାର୍ଥପ୍ରତି ଜାଗ୍ରତ ନ ହେଲା ପର୍ଯ୍ୟନ୍ତ ଏହାର ସମାଧାନ ପନ୍ଥା ନାହିଁ ।

## ନିର୍ବାଚନ ପ୍ରଥା

ଗଣତନ୍ତ୍ର ପଦ୍ଧତି ପରିଚାଳିତ ଦେଶରେ ଜନସାଧାରଣ ନିର୍ବାଚନ ପ୍ରଥାର କାର୍ଯ୍ୟକ୍ରମରୁ ଅଲଗା ହୋଇ ରହିବା ସମ୍ଭବ ନୁହେଁ । ଯଦି ନିର୍ବାଚନରୁ ଅଲଗା ରହିବେ ତେବେ ନିଜେ ହିଁ ନିଜର କ୍ଷତି କରିବେ ।

ଅତୀତରେ ରାଜାମାନେ ଲୋକକଲ୍ୟାଣ ଦିଗରେ ପଦକ୍ଷେପ ନେଉଥିଲେ । ବର୍ତ୍ତମାନ ଶାସନ କଳ ହିଁ ସମାଜ କଲ୍ୟାଣର ଦାୟିତ୍ୱ ଗ୍ରହଣ କରୁଛି । ଦେଶରେ ଶାସନ ଚଳାଇବା ପାଇଁ ଗ୍ରାମ ପଞ୍ଚାୟତ ଠାରୁ ଆରମ୍ଭ କରି ରାଜ୍ୟ ବିଧାନ ସଭା ଏବଂ କେନ୍ଦ୍ର ପାର୍ଲିଆମେଣ୍ଟକୁ ଆମେ ଆମର ପ୍ରତିନିଧି ପଠାଇ ଥାଉ । ଏହି ପ୍ରତିନିଧିମାନଙ୍କର କାର୍ଯ୍ୟକଳାପ ଉପରେ ଦେଶର ଓ ସମାଜର ଉନ୍ନତି କିମ୍ବା ଅବନତି ନିର୍ଭର କରେ । ତେଣୁ ନିର୍ବାଚନ ପଦ୍ଧତି ପ୍ରତି ଜନସାଧାରଣ ସଚେତନ ହେବା ନିତାନ୍ତ ଆବଶ୍ୟକ ।

ଏହି ଗଣତନ୍ତ୍ର ପଦ୍ଧତିକୁ କ୍ରିୟାନ୍ୱିତ କରିବା ପାଇଁ ଦେଶରେ ବିଭିନ୍ନ ରାଜନୈତିକ ଦଳ ଅଛନ୍ତି । ଯେଉଁ ଦେଶରେ ଦୁଇ କିମ୍ବା ତିନି ମୁଖ୍ୟ ରାଜନୈତିକ ଦଳ ଅଛି ସେଠାରେ ଗଣତନ୍ତ୍ର ପଦ୍ଧତି ସୁଚାରୁରୂପେ ଚାଲେ । ଆମ ଦେଶରେ ରାଜନୈତିକ ଦଳ ଅସଂଖ୍ୟ । ବିଧାନ ସଭା ଓ ପାର୍ଲିଆମେଣ୍ଟରେ ଗୋଟିଏ ରାଜନୈତିକ ଦଳରୁ ମାତ୍ର ଗୋଟିଏ ଗୋଟିଏ ପ୍ରତିନିଧି ଥିବା ଦେଖାଯାଏ । ଛୋଟ ଛୋଟ ପାର୍ଟିଥିଲେ ସେମାନେ ନିଜର ସ୍ୱାର୍ଥ ପାଇଁ ସରକାରରେ ଅସ୍ଥିରତା ସୃଷ୍ଟି କରନ୍ତି । ତେଣୁ ଗଠନମୂଳକ କାର୍ଯ୍ୟକ୍ରମରେ ବାଧା ପହଞ୍ଚେ ।

ସ୍ୱାଧୀନ ଭାରତର ନୂତନ ସଂବିଧାନ ପ୍ରଣୟନ ହେବାପରେ ସାବାଳକ ଭୋଟ ପ୍ରଥା ଅନୁସାରେ ୧୯୫୨ରୁ ପ୍ରଦେଶ ଓ କେନ୍ଦ୍ରରେ ନିର୍ବାଚନ ପ୍ରଥା ଆରମ୍ଭ ହୋଇ ଆଜିପର୍ଯ୍ୟନ୍ତ ଚାଲୁରହିଛି ।

ସାବାଳକ ଭୋଟ ପ୍ରଥା ଅନୁସାରେ ନିର୍ବାଚିତ ପ୍ରତିନିଧିମାନେ ଦେଶରେ ସୁଶାସନ କରିବାରେ ସହାୟକ ହେବେ ଏବଂ ଦେଶର ସାମାଜିକ, ଆର୍ଥିକ ଓ ନୈତିକ ପ୍ରଗତି ହେବ ବୋଲି ଯେଉଁ ଆଶା ଥିଲା ତାହା କ୍ରମେ ନିରାଶାରେ ପରିଣତ ହେଲାଣି । ଗ୍ରାମପଞ୍ଚାୟତ ଠାରୁ ଆରମ୍ଭ କରି ବିଧାନ ସଭା ଓ ପାର୍ଲାମେଣ୍ଟ ପର୍ଯ୍ୟନ୍ତ ବିଭିନ୍ନ ରାଜନୈତିକ ପ୍ରତିନିଧିଙ୍କ ଆଚରଣ ଓ କାର୍ଯ୍ୟକଳାପ ଦେଖି ଜନସାଧାରଣ ହତାଶ ହେଲେଣି । ସେମାନଙ୍କ ମଧ୍ୟରେ ସାଧାରଣ କଥାକୁ ନେଇ ତୀବ୍ର ମତଭେଦ ହେଉଛି । ଲୋକଙ୍କୁ ଏକାଠି କରିବା ପରିବର୍ତ୍ତେ ସେମାନେ ଭାଗ ଭାଗ କରୁଛନ୍ତି । ଦେଶର ସ୍ୱାର୍ଥ ବଦଳରେ ନିଜ ନିଜ ଦଳର ସ୍ୱାର୍ଥକୁ ସେମାନେ ପ୍ରାଧାନ୍ୟ ଦେଉଛନ୍ତି । ସମାଜରେ ଶାନ୍ତି ଶୃଙ୍ଖଳା ପରିବର୍ତ୍ତେ ଅଶାନ୍ତି ଓ ବିଶୃଙ୍ଖଳା ସୃଷ୍ଟି ହେଉଛି । ନିର୍ବାଚନରେ ନାନା ପ୍ରକାର ଅସତ୍ ପନ୍ଥା ଅବଲମ୍ବନ କରାଯାଉଛି । କ୍ରିମିନେଲ୍‌ମାନେ ନିର୍ବାଚିତ ହୋଇ ଆସୁଛନ୍ତି।

ଭବିଷ୍ୟତରେ ଏହାର ପରିଣତି ଯେ କ'ଣ ହେବ ତାହା ଚିନ୍ତାର ବିଷୟ ହେଲାଣି ।

## ସଂଖ୍ୟାଗରିଷ୍ଠ ଓ ସଂଖ୍ୟାଲଘୁ ସମସ୍ୟା

୧୯୪୭ ଅଗଷ୍ଟ ୧୫ ତାରିଖରେ ଧର୍ମ ଭିତ୍ତିରେ ଭାରତ ଭାଗ ଭାଗ ହେଲା । ହିନ୍ଦୁମାନଙ୍କୁ ସଂଖ୍ୟାଗରିଷ୍ଠ ଏବଂ ଅଣ ହିନ୍ଦୁମାନଙ୍କୁ ସଂଖ୍ୟାଲଘୁ କୁହାଗଲା । ଏହି ଅଣ ହିନ୍ଦୁମାନଙ୍କ ମଧ୍ୟରେ ମୁସଲ୍‌ମାନ୍ ଓ ଖ୍ରୀଷ୍ଟିଆନ ପ୍ରଧାନ ।

ପ୍ରାଚୀନ ଭାରତରେ ସମସ୍ତ ଅଧିବାସୀ ହିନ୍ଦୁ ଥିଲେ । ବିଦେଶୀ ଶାସକମାନେ ଭାରତରେ ଶାସନ କରିବା ସମୟରେ ଅଣହିନ୍ଦୁ ଜନ ସଂଖ୍ୟାର ମୂଳଦୁଆ ପଡ଼ିଲା । ମୁସଲିମ୍ ରାଜତ୍ୱ କାଳରେ ବାଧବାଧକତା କରି ହିନ୍ଦୁମାନଙ୍କୁ ଧର୍ମାନ୍ତରଣ କରାଗଲା । ବ୍ରିଟିଶ ଶାସନ କାଳରେ ନାନା ପ୍ରଲୋଭନ ପନ୍ଥା ଅବଲମ୍ବନ କରି ହିନ୍ଦୁମାନଙ୍କୁ ଖ୍ରୀଷ୍ଟିଆନ କରାଗଲା । ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକ ଖ୍ରୀଷ୍ଟିଆନମାନଙ୍କ ଧର୍ମାନ୍ତରଣକୁ ବ୍ୟଙ୍ଗ କରି ; ହେନ୍, ପେନ୍, ଲେଡ଼ି ଓ ପେଡ଼ିର ପ୍ରଭାବ ଫଳରେ ଧର୍ମାନ୍ତରଣ ହୋଇଛି ବୋଲି ମତବ୍ୟକ୍ତ କରିଥିଲେ । ଓଡ଼ିଶାରେ ଯେତେ ଖ୍ରୀଷ୍ଟିଆନ୍ ଅଛନ୍ତି ସେମାନେ ଏହି ଚାରୋଟି ଶ୍ରେଣୀ ମଧ୍ୟରୁ କୌଣସି ଗୋଟିଏ ଶ୍ରେଣୀର ଅନ୍ତର୍ଭୁକ୍ତ ।

କାଳକ୍ରମେ ଏହି ସଂଖ୍ୟା ଲଘୁ ସଂପ୍ରଦାୟର ଲୋକେ ରାଜନୈତିକଦଳଙ୍କର ସଖି କଣ୍ଢେଇ ହେଲେ । ସେମାନଙ୍କୁ ବିଭ୍ରାନ୍ତ କଲେ । ଡ଼ାହାଣୀ ହୋଇ ଲାଗି ଗୁଣିଆ ହୋଇ ଝାଡ଼ିବାକୁ ଆଗୁଆ ହେଲେ । ସେମାନେ ଅସୁରକ୍ଷିତ ବୋଲି କହି ତାଙ୍କୁ ବିଭ୍ରାନ୍ତ କରି ସୁରକ୍ଷା ଦେବାର ପ୍ରତିଶୃତି ଦେଲେ । ଦେଶରେ ମତଭେଦ ସୃଷ୍ଟି ହେଲା । ଅବଶ୍ୟ ବ୍ରିଟିଶ ସରକାର

ତାଙ୍କର''ବିଭେଦ ସୃଷ୍ଟି ଓ ଶାସନ'' ନୀତି ପ୍ରୟୋଗ କରି ପ୍ରଥମେ ସଫଳ ହୋଇଥିଲେ । କିନ୍ତୁ ଭାରତ ସ୍ୱାଧୀନ ହେବା ପରେ ଆମର ରାଜନୈତିକ ଦଳଗୁଡ଼ିକ ମଧ୍ୟ ସେହି ନୀତି ତ୍ୟାଗ କରିବା ପରିବର୍ତ୍ତେ ରାଜନୈତିକ ସ୍ୱାର୍ଥ ରଖି ସେହି ନୀତି ଅବଲମ୍ବନ କଲେ ।

ମହାତ୍ମା ଗାନ୍ଧିଙ୍କର ମୂଳ ନୀତି ''ଅଖଣ୍ଡ ଭାରତ ଓ ହିନ୍ଦୁ ମୁସଲିମ୍ ଏକତା'' କୁ ତତ୍କାଳୀନ ନେତାମାନେ ଗ୍ରହଣ କଲେ ନାହିଁ । ସେ ନିଜକୁ ହତାଶ ମନେକଲେ । ତାଙ୍କ ସହ ଦୀର୍ଘକାଳ ଆନ୍ଦୋଳନରେ ସହଯୋଗ କରି ଶେଷ ମୂହୂର୍ତ୍ତରେ ତାଙ୍କ ପ୍ରତି ବିଶ୍ୱାସଘାତ କରିଥିଲେ । ବାଧ୍ୟ ହୋଇ ତାଙ୍କୁ ମଧ୍ୟ ଏଥିରେ ସମ୍ମତ ହେବାକୁ ପଡ଼ିଲା । କ୍ଷମତା ଲୋଭ ଆମର ନେତାମାନଙ୍କୁ ଅନ୍ଧ କରିଥିଲା ।

ମହାତ୍ମାଗାନ୍ଧି ଯଦି ଜିଦ୍ କରି ଏହା ବିରୋଧରେ ଅନଶନ କରିଥାନ୍ତେ, ହୁଏତ ଦେଶ ବିଭାଜନ କାର୍ଯ୍ୟକାରୀ ହୋଇପାରି ନଥାନ୍ତା । ଭାରତ ଇତିହାସର ଗତି ଭିନ୍ନ ପ୍ରକାର ହୋଇଥାନ୍ତା । ଏହାପୂର୍ବରୁ ସେ ଅନେକ ଥର ଅନଶନ କରି ବ୍ରିଟିଶ୍ ସରକାରଙ୍କ ନୀତି ବଦଳାଇ ପାରି ଥିବା ଦୃଷ୍ଟାନ୍ତ ଅଛି । ଦୁର୍ଭାଗ୍ୟର କଥା ବର୍ତ୍ତମାନ ସେ ତାହା କରି ନ ଥିଲେ ।

ଭାରତ ସ୍ୱାଧୀନ ହେବା ପରେ କାଶ୍ମୀରରେ ଅଧିକ ସଂଖ୍ୟକ ମୁସଲମାନ ଥିବା ହେତୁ ତାଙ୍କୁ ସମ୍ବିଧାନରେ ସ୍ୱତନ୍ତ୍ର ସୁବିଧା ଦିଆଗଲା । ନାଗାଲାଣ୍ଡ, ମେଘାଳୟ, ଅରୁଣାଚଳ ପ୍ରେଦେଶ ଭଳି ଖ୍ରୀଷ୍ଟିଆନ୍ ଧର୍ମ ବହୁଳ ରାଜ୍ୟ ସୃଷ୍ଟି କରାଗଲା । ସମ୍ବିଧାନରେ ମଧ୍ୟ ତାଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା ଦିଆଗଲା । ସଂଖ୍ୟାଲଘୁ ଶିକ୍ଷାଅନୁଷ୍ଠାନକୁ ସ୍ୱତନ୍ତ୍ର ଅନୁଦାନ ଦିଆଗଲା । ତୀର୍ଥଯାତ୍ରା କରିବା ପାଇଁ ଟଙ୍କା ଦିଆଗଲା । ଏକାଧିକ ସ୍ତ୍ରୀ ବିବାହ କରିବା ପାଇଁ ଅନୁମତି ଦିଆଗଲା , ଇତ୍ୟାଦି । ଏହି ସବୁ ସୁବିଧା ହିନ୍ଦୁମାନଙ୍କୁ ଦିଆଗଲା ନାହିଁ । ସଂଖ୍ୟାଗରିଷ୍ଠ ହିନ୍ଦୁଙ୍କ ଅପେକ୍ଷା ଅନେକ କ୍ଷେତ୍ରରେ ସଂଖ୍ୟାଲଘୁଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା ଥିଲେ ସୁଦ୍ଧା ସେମାନେ ଭାରତରେ ସୁରକ୍ଷିତ ମଣୁ ନାହାନ୍ତି ବୋଲି ଚିତ୍କାର କରୁଛନ୍ତି । ଏହାର ମୁଖ୍ୟ କାରଣ ହେଲା କେତେକ ରାଜନୈତିକ ଦଳ ସେମାନଙ୍କୁ ଭୋଟ ପାଇବା ଉଦ୍ଦେଶ୍ୟରେ ବିଭ୍ରାନ୍ତ କରୁଛନ୍ତି । ଏହି ତୁଷ୍ଟି କରଣ ନୀତି ଫଳରେ ଦିନକୁ ଦିନ ବିଭେଦ ବୃଦ୍ଧି ହେବାରେ ଲାଗିଛି । ଏହାର ପରିଣତି କ'ଣ ହେବ ତାହା ଅନିଶ୍ଚିତ ।

## ଜନସଂଖ୍ୟା ବିସ୍ଫୋରଣ

ଦ୍ରୁତ ଗତିରେ ଜନସଂଖ୍ୟା ବୃଦ୍ଧି ଯେ କୌଣସି ଦେଶର ବିକାଶ ପଥରେ ପ୍ରତିବନ୍ଧକ ହୋଇଥାଏ । ପ୍ରଥମ ଜନସଂଖ୍ୟା ବହୁଳ ଦେଶ ହେଉଛି, ଚୀନ । ତାପରେ ଭାରତ ଦ୍ୱିତୀୟ ।ଦେଶର ସମ୍ବଳ ସୀମିତ । ଖାଦ୍ୟ, ବସ୍ତ୍ର, ଜଳ, ବାସଗୃହ, ଶିକ୍ଷା ଓ ସ୍ୱାସ୍ଥ୍ୟସେବା ବ୍ୟବସ୍ଥା, ଗମନାଗମନ ସୁବିଧା, ଉତ୍ତମ ପରିବେଶ, ଚାକିରି ଓ କର୍ମଧନ୍ଦା ବହୁଳ ଜନ ସଂଖ୍ୟା

ପାଇଁ ଯୋଗାଇବା କୌଣସି ଦେଶପକ୍ଷରେ ଅସମ୍ଭବ ।

୧୯୫୧ରେ ଭାରତରେ ଜନସଂଖ୍ୟା ୩୬ କୋଟୀ ଥିବା ବେଳେ ବର୍ତ୍ତମାନ ତାହା ଏକଶହ କୋଟୀରୁ ଉର୍ଦ୍ଧ୍ୱ ହେଲାଣି । ସେହିପରି ଓଡ଼ିଶାର ଜନସଂଖ୍ୟା ୧୯୫୧ରେ ଦେଢ଼ କୋଟୀ ଥିବା ବେଳେ ବର୍ତ୍ତମାନ ତାହା ୪ କୋଟୀରୁ ଉର୍ଦ୍ଧ୍ୱ ହେଲାଣି । ଖ୍ରୀଷ୍ଟାବ୍ଦ ୨୦୨୦ ସୁଦ୍ଧା ଭାରତ ପୃଥିବୀର ସର୍ବାଧିକ ଜନବହୁଳ ଦେଶ ହୋଇଯିବ ।

ଜନସଂଖ୍ୟା ବୃଦ୍ଧି ବନ୍ଦ କରିବା ପାଇଁ ସରକାର ପରିବାର ନିୟୋଜନ ଓ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଚଳାଉଛନ୍ତି । କିନ୍ତୁ ତାହା ଆଶାନୁରୂପ ସଫଳତା ଲାଭ କରିପାରୁନାହିଁ । ଭାରତରେ ଶିକ୍ଷାର ଅଭାବ ଜନସଂଖ୍ୟା ବୃଦ୍ଧିର ପ୍ରଧାନ କାରଣ ବୋଲି କୁହାଯାଉଛି । ଭାରତରେ ୧୯୫୧ରେ ସାକ୍ଷରତା ଶତକଡ଼ା ୧୮.୩୩ ଥିବା ସ୍ଥଳେ, ୨୦୦୧ରେ ତାହା ୬୫.୩୮ ହୋଇଛି । ଓଡ଼ିଶରେ ୧୯୫୧ ରେ ସାକ୍ଷରତା ଶତକଡ଼ା ୧୫.୮୦ ଥିବାବେଳେ ୨୦୦୧ରେ ତାହା ୬୩.୬୧ ହୋଇଛି । ଶିକ୍ଷାର ବୃଦ୍ଧି ସତ୍ତ୍ୱେ ଜନସଂଖ୍ୟା ହ୍ରାସ ପାଉନାହିଁ ।

ଭାରତରେ ଜନସଂଖ୍ୟା ନିୟନ୍ତ୍ରଣ ସମସ୍ୟା ରାଜନୈତିକ ଓ ଧାର୍ମିକ । ହିନ୍ଦୁମାନେ ଜନସଂଖ୍ୟା ନିୟନ୍ତ୍ରଣର ବିରୋଧୀ ନୁହନ୍ତି । କିନ୍ତୁ ଅଣହିନ୍ଦୁମାନେ ଏହାର ବିରୋଧୀ । ସେମାନଙ୍କର ଲକ୍ଷ କିପରି ତାଙ୍କର ସଂଖ୍ୟା ବୃଦ୍ଧି ହେଲେ ସେମାନଙ୍କର ଅଧିକରୁ ଅଧିକ କ୍ଷମତା ବୃଦ୍ଧି ହେବ । ଆମର କେତେକ ରାଜନୈତିକ ଦଳ ଧର୍ମ ନିରପେକ୍ଷତା ଆଳରେ ଜନ୍ମନିୟନ୍ତ୍ରଣ ପାଇଁ ଦୃଢ଼ ପଦକ୍ଷେପ ନେବାକୁ ନାରାଜ । ତେଣୁ ପରିବାର ନିୟନ୍ତ୍ରଣ ଭାରତରେ ସଫଳତା ଲାଭ କରିପାରୁ ନାହିଁ ।

ରାଜନୈତିକ ଦଳଗୁଡ଼ିକ ଦଳର ସ୍ୱାର୍ଥ ଅପେକ୍ଷା ଯଦି ଦେଶର ସ୍ୱାର୍ଥକୁ ଗୁରୁତ୍ୱ ଦେଇ ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଦୁଇରୁ ଅଧିକ ସନ୍ତାନ ବେଆଇନ ବୋଲି ଆଇନ କରାଯାଏ ତେବେ ଜନସଂଖ୍ୟା ନିୟନ୍ତ୍ରଣ ହୋଇଯିବ । ନଚେତ୍ ଦେଶ ରସାତଳଗାମୀ ହେବ ।

## ପରିବେଶ ପ୍ରଦୂଷଣ

ଆମର ମୁନି ଋଷିମାନେ ହୋମ ବା ଯଜ୍ଞ ଧାର୍ମିକ ଉଦ୍ଦେଶ୍ୟରେ କରୁଥିଲେ ସୁଦ୍ଧା ପରିବେଶ ଶୋଧନରେ ଏହାର ଆବଶ୍ୟକତା ଗୁରୁତର ଥିଲା । ହିନ୍ଦୁମାନଙ୍କର ଅଧିକାଂଶ ଧାର୍ମିକ କାର୍ଯ୍ୟରେ ହୋମ କରାଯାଇ ଥାଏ । ଏହାର ଧାର୍ମିକ ଉଦ୍ଦେଶ୍ୟ ସହ ପରିବେଶ ଶୋଧନ ମଧ୍ୟ ହେଉ ଥିଲା । ବର୍ତ୍ତମାନ ହୋମ ଏକ ଅନାବଶ୍ୟକ ବୈଦିକ କର୍ମକାଣ୍ଡ କହି ଲୋକେ ଉପହାସ କରନ୍ତି ।

ହୋମ ଦ୍ୱାରା ପର୍ଯ୍ୟାବରଣ ଶୁଦ୍ଧ ହୋଇଥାଏ । ଏହାର ବୈଜ୍ଞାନିକ ବିଶ୍ଳେଷଣ ହୋଇସାରିଛି । ଯଜ୍ଞରୁଉତ୍ପନ୍ନ ହେଉଥିବା ବାଷ୍ପ ବାୟୁମଣ୍ଡଳରେ ତେଜସ୍କ୍ରିୟ ମାତ୍ରା କମାଇ ଥାଏ । ଯଜ୍ଞରେ ବ୍ୟବହୃତ ପଦାର୍ଥ ଯଥା ଚନ୍ଦନ, ଆମ୍ବ, ପଲାଶ, ବିଲ୍ୱ, ରାଶି ଆଦି ଶସ୍ୟ ତଥା ହରିଦ୍ରା, ବାହାଡ଼ା, ଗୁଗୁଳ, ଶଙ୍ଖ ପୁଷ୍ପ, ବ୍ରାହ୍ମୀ, ଅଁଳା ଆଦି ଔଷଧୀୟ ଫଳ ଆଦି ଦହନ ହେତୁ ଯେଉଁ ବାଷ୍ପ ଉତ୍ପନ୍ନ ହୋଇ ବାୟୁମଣ୍ଡଳରେ ମିଶେ ତାହା ପ୍ରଦୂଷଣରୁ ମୁକ୍ତ ରଖେ ।

ଏହାଛଡ଼ା ଯଜ୍ଞ ସମୟରେ ଉଚ୍ଚାରିତ ହେଉଥିବା ମନ୍ତ୍ରଧ୍ୱନିର ପ୍ରଭାବ ମଧ୍ୟ ଅଛି । ହୋମ ପରିବେଶ ସହ ମନ, ବୁଦ୍ଧି ଓ ଆତ୍ମା ଉପରେ ସୁଫଳ ପ୍ରଦାନ କରିଥାଏ ।

ହିନ୍ଦୁମାନେ ବଟ, ଅଶ୍ୱତ୍ଥ, ନିମ୍ବ, ବେଲ, ଚନ୍ଦନ, ତୁଳସୀ ଆଦି କେତେକ ବୃକ୍ଷକୁ ଦେବ ଦେବୀ ମାନ୍ୟତା ପ୍ରଦାନ କରି ଏହି ବୃକ୍ଷରୋପଣ କରୁଥିଲେ ଏବଂ ପ୍ରତିଦିନ ଏହି ବୃକ୍ଷ ମୂଳରେ ଜଳ ଦେଉଥିଲେ । ଏହା ଛଡ଼ା ଜଙ୍ଗଲ ରକ୍ଷଣା ବେକ୍ଷଣ ମଧ୍ୟ କରୁଥିଲେ । ବୃକ୍ଷ, ଲତା, ପର୍ବତ, ନଦନଦୀ ପ୍ରକୃତି ପ୍ରତି ଆଗେ ଶ୍ରଦ୍ଧା ଓ ଅନୁରକ୍ତି ଥିଲା । ବର୍ତ୍ତମାନ ଲୋକଙ୍କର ଏହି ଧାର୍ମିକ ମନୋଭାବ ଲୋପ ପାଇଛି । ଲୋକେ ଅବାଧ ଭାବେ ବୃକ୍ଷ ସଂପଦ ନଷ୍ଟ କରୁଛନ୍ତି । ଅନ୍ୟ କେହି ଗଛ ଲଗାଇ ଥିଲେ ତାହା ମଧ୍ୟ କାଟିନେଉଛନ୍ତି । ବନଜଙ୍ଗଲ ବୃକ୍ଷ ଲତା ପ୍ରତି ମମତା ନାହିଁ । ତେଣୁ ପରିବେଶ ପ୍ରଦୂଷଣ ହେଉଛି ଓ ବର୍ଷା ଅଭାବ ହେଉଛି ।

ଆମେ ଗ୍ରାମ୍ୟ ପୁଷ୍କରିଣୀ, କୂଅ, ସ୍ୱଚ୍ଛନ୍ଦ ରଖୁ ନାହୁଁ । ଆଚରଣ ବିଧି ଲଙ୍ଘନ କରୁଛୁ । ରାସ୍ତା କଡ଼େ ଖୋଲାରେ ମଳତ୍ୟାଗ କରୁଛୁ । ରାସ୍ତା ସଫା ରଖୁନାହୁଁ । ଆଜିକାଲି ଯେଉଁ ପଲିଥିନ୍ ବ୍ୟାଗ୍ ମିଳୁଛି ସେଥିରେ ଖାଦ୍ୟ ଜିନିଷ ରଖି ବାହାରେ ଫିଙ୍ଗି ଦେବା ଫଳରେ ଗୋରୁଗାଈ ତାହାଖାଇ ମରୁଛନ୍ତି । ପରିବେଶ ନିର୍ମଳ ରଖିବା ପ୍ରତି ଆମେ ଜମା ସଚେତନ ନୋହୁ ।

ଆଜିକାଲି ଦେଶରେ ସହର ସଂଖ୍ୟା ଓ ଶିଳ୍ପ ଉଦ୍‌ଯୋଗ ବୃଦ୍ଧି ପାଉଛି । ବିଭିନ୍ନ କାରଖାନରୁ ଏବଂ ଯାନବାହନରୁ ଧୂମ୍ର ନିର୍ଗତ ହୋଇ ପରିବେଷ ଦୂଷିତ ହେଉଛି । ରାସ୍ତା କଡ଼ ଏବଂ ଅପରିଷ୍କାର ସ୍ଥାନ ମାନଙ୍କରେ ମଜୁରିଆ ଓ ଭିକାରୀ ଓ କୁଷ୍ଠରୋଗୀମାନଙ୍କର ବସ୍ତି ଗଢ଼ି ଉଠୁଛି । ସହର ସବୁ ପରିବେଶକୁ ଦୂଷୀତ କରିବାରେ ଲାଗିଛନ୍ତି ।

ପ୍ରଦୂଷଣ ବନ୍ଦ କରିବାକୁ ହେଲେ ଜନସାଧାରଣଙ୍କ ମନରେ ସଚେତନତା ଜାଗ୍ରତ ହେବା ଉଚିତ ।

# ଓଡ଼ିଶା ଓ ଓଡ଼ିଆ

ଓଡ଼ିଶାକୁ କଳିଙ୍ଗ, ଉଡ୍ର, କୋଶଳ ଏବଂ ଉତ୍କଳ ବୋଲି କୁହାଯାଏ । ପୁରାଣ ଯୁଗରେ ବହୁ ଚର୍ଚ୍ଚିତ କଳିଙ୍ଗ ହେଉଛି ଆଜିର ଓଡ଼ିଶା । ରାମାୟଣରେ କଳିଙ୍ଗର ନାମ ଉଲ୍ଲେଖ ଅଛି । ମହାଭାରତ ଯୁଦ୍ଧରେ କଳିଙ୍ଗ ସେନା ଭାଗ ନେଇଥିବା କଥା ଲେଖାଅଛି । ଅନ୍ୟାନ୍ୟ ପୁରାଣରେ ମଧ କଳିଙ୍ଗର ବର୍ଣ୍ଣନା ଅଛି । କଳିଙ୍ଗର ଲୋକେ ପରାକ୍ରମୀ, ଶିକ୍ଷିତ ଓ ସମୃଦ୍ଧିଶାଳୀ ଥିଲେ । ଏହାର ପ୍ରାଚୀନ ଐତିହ୍ୟ, କୀର୍ତ୍ତି ଅତୁଳନୀୟ । ସମଗ୍ର ଭାରତରେ କଳିଙ୍ଗ ଏକ ବୀର ଓ ସାହସୀ ଦେଶ ରୂପେ ପରିଗଣିତ ହୋଇଥିଲା । କାଳିଦାସଙ୍କ ରଚିତ ରଘୁବଂଶରେ କଳିଙ୍ଗ ଅଧିବାସୀ ଜାଭା, ସୁମାତ୍ରା, ଇଣ୍ଡୋନେସିଆ,କାମ୍ବୋଡ଼ିଆ, ବ୍ରହ୍ମଦେଶ, ମାଲେସିଆ, ଶ୍ରୀଲଙ୍କାରେ ନୌବାଣିଜ୍ୟ କରି ବସତି ସ୍ଥାପନ କରିଥିଲେ ବୋଲି ଲେଖାଅଛି ।

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ପ୍ରତାପଶାଳୀ ମୋର୍ଯ୍ୟ ସମ୍ରାଟ ଅଶୋକ ପରାକ୍ରମୀ କଳିଙ୍ଗ ସେନାସହ ଯୁଦ୍ଧ କରି ଜୟ ଲାଭ କରିଥିଲେ ସତ କିନ୍ତୁ କଳିଙ୍ଗ ଯୁଦ୍ଧରେ ଲୋକ କ୍ଷୟ ଦେଖି ସେ ଧର୍ମାଶୋକରେ ପରିଣତ ହୋଇଥିଲେ ।

ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଖାରବେଳ କଳିଙ୍ଗ ସିଂହାସନ ଆରୋହଣ କରି ଉତ୍ତର ଭାରତରେ ଏକ ବିଶାଳ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ଅଶୋକଙ୍କ ଦ୍ୱାରା କଳିଙ୍ଗ ପରାଜୟର ପ୍ରତିଶୋଧ ନେବା ପାଇଁ ସେ ମଗଧ ରାଜ୍ୟ ଜୟ କରିଥିଲେ । ତାଙ୍କର ସାମ୍ରାଜ୍ୟ ଉତ୍ତରରେ ପଞ୍ଜାବଠାରୁ ଦକ୍ଷିଣରେ ପାଣ୍ଡ୍ୟ ପର୍ଯ୍ୟନ୍ତ ବିସ୍ତାର ଥିଲା ।

ନିୟତିର କାଳଚକ୍ରରୁ କେହି ଉଦ୍ଧାର ପାଇ ନାହିଁ । କ୍ରମେ କଳିଙ୍ଗ ଖଣ୍ଡ ବିଖଣ୍ଡିତ ହୋଇ ତୋଷଳୀ, କୋଶଳ ଓ କଳିଙ୍ଗ ନାମରେ ସ୍ୱାଧୀନ ରାଜ୍ୟ ହୋଇଥିଲା । କଳିଙ୍ଗ ରାଜ୍ୟ ଗୁପ୍ତ ବଂଶର ଅଧିନ ହେଲା ।

ଖାରବେଳଙ୍କ ପରେ ଓଡ଼ିଶାରେ ଅନେକ ରାଜବଂଶ ରାଜତ୍ୱ କରିଥିଲେ । ସେମାନଙ୍କ ମଧ୍ୟରେ କେଶରୀ ବଂଶ, ଗଙ୍ଗବଂଶ, ସୂର୍ଯ୍ୟବଂଶ ଓ ଭୋଇବଂଶ ପ୍ରଧାନ । ଭୋଇବଂଶର ଶେଷ ରାଜା ମୁକୁନ୍ଦ ଦେବ ମୁସଲମାନଙ୍କ ଦ୍ୱାରା ୧୫୬୮ରେ ପରାସ୍ତ, ବନ୍ଦୀ ଓ ହତ୍ୟାପରେ ଓଡ଼ିଶା ମୁସଲମାନଙ୍କ ଶାସନାଧୀନ ହେଲା । ମୁକୁନ୍ଦ ଦେବ ଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ରାଜା ।

ମୁକୁନ୍ଦ ଦେବଙ୍କ ପରେ ଓଡ଼ିଶା ଆଫଗାନ, ମୋଗଲ, ମରହଟ୍ଟା ଓ ଶେଷରେ ବ୍ରିଟିଶ ଶାଶନାଧୀନରେ ରହିଲା । ୧୫୬୮ରୁ ୧୫୯୨ ପର୍ଯ୍ୟନ୍ତ ଆଫଗାନ ଶାସନ, ୧୫୯୨ରୁ ୧୭୫୧ ପର୍ଯ୍ୟନ୍ତ ମୋଗଲ ଶାସନ, ୧୭୫୨ରୁ ୧୮୦୩ ପର୍ଯ୍ୟନ୍ତ ମରହଟ୍ଟା ଶାସନ ଏବଂ ଶେଷରେ ୧୮୦୩ରୁ ୧୯୪୭ ପର୍ଯ୍ୟନ୍ତ ବ୍ରିଟିଶ୍ ଶାଶନାଧୀନ ଥିଲା ।

ମୋଗଲ ଶାସନରେ ଓଡ଼ିଶାର କରଦ ରାଜ୍ୟଗୁଡ଼ିକୁ ଗଡ଼ଜାତ ବୋଲି କୁହାଗଲା । ଏହି ଗଡ଼ଜାତ ରାଜ୍ୟଗୁଡ଼ିକ ମରହଟ୍ଟା ଓ ବ୍ରିଟିଶ୍ ଶାସନରେ ମଧ୍ୟ ସେହିପରି ରହିଲା । ଏପରି ଓଡ଼ିଶାରେ ୩୬ଟି ଗଡ଼ଜାତ ରାଜ୍ୟ ଥିଲା । ବ୍ରିଟିଶ୍ ସରକାର ମଧ୍ୟ ଓଡ଼ିଶାକୁ ଚାରି ଭାଗ କରି ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବିହାର ଓ ବଙ୍ଗଳାରେ ବିଭିନ୍ନ ଅଂଶ ରଖିଲେ । ଏପରି ଭାବରେ ଓଡ଼ିଶା ଓ ଓଡ଼ିଆମାନଙ୍କୁ ଭାଗ ଭାଗ କରି ଦୁର୍ବଳ କରିବାକୁ ଉଦ୍ୟମ କରିଥିଲେ । କାରଣ ଓଡ଼ିଆମାନେ ସ୍ୱାଧୀନ ମନୋଭାବାପନ୍ନ ଓ ବ୍ରିଟିଶ୍ ଅଧୀନରେ ଆସିବ ପୂର୍ବରୁ ତୀବ୍ର ପ୍ରତିରୋଧ କରିଥିଲେ । ବ୍ରିଟିଶମାନଙ୍କ ବିରୁଦ୍ଧରେ ଅନେକ ବିଦ୍ରୋହ ଓଡ଼ିଶାରେ ହୋଇଥିଲା । ତେଣୁ ଏହି ଜାତିକୁ ବିଚ୍ଛିନ୍ନ କରି ପଙ୍ଗୁ କରିବା ବ୍ରିଟିଶ୍ ଶାସକମାନଙ୍କର ଚକ୍ରାନ୍ତ ଥିଲା ।

୧୮୦୩ରେ ବ୍ରିଟିଶ ସରକାର ଭାରତରେ ସର୍ବଶେଷରେ ଓଡ଼ିଶାକୁ ନିଜ ଅଧୀନକୁ ଆଣିଥିଲେ । କ୍ରମେ ବ୍ରିଟିଶ ଶାସନକାଳରେ ସମଗ୍ର ଓଡ଼ିଆ ଭାଷା ଅଞ୍ଚଳ ଏକତ୍ର କରିବା ପାଇଁ ଆନ୍ଦୋଳନ ଆରମ୍ଭ ହେଲା ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ବହୁ ନେତୃସ୍ଥାନୀୟ ବ୍ୟକ୍ତି ଅକ୍ଳାନ୍ତ ଚେଷ୍ଟା କରିଥିଲେ । ଜନସାଧାରଣଙ୍କଠାରେ ଚେତନା ଜାଗ୍ରତ କରିଥିଲେ । ଫଳରେ ବିଭିନ୍ନ ଅଞ୍ଚଳରେ ଆନ୍ଦୋଳନ ଆରମ୍ଭ ହୋଇଥିଲା । ୧୮୭୦ରୁ ଗଞ୍ଜାମରେ ପ୍ରଥମେ ଦେଶମିଶ୍ରଣ ସ୍ୱର ଉତ୍ତୋଳନ ହେଲା । ଘୁମୁସରରେ ଗୋଟିଏ ସଭା ହୋଇ ଓଡ଼ିଆଙ୍କର ଦାବି ସରକାର ଠାରେ ସ୍ଥାପିତ ହୋଇଥିଲା । ୧୮୭୩ରେ ଉତ୍କଳ ହିତ ବାହିନୀ ସମାଜ ଗଠନ କରାଯାଇଥିଲା । ୧୮୮୫ରେ ପାରଳାଖେମୁଣ୍ଡିରେ ଉତ୍କଳ ହିତୈଷୀ ସମାଜ ଏବଂ ୧୯୦୦ରେ ବିକ୍ରମଦେବଙ୍କ ନେତୃତ୍ୱରେ ବିଶାଖାପାଟଣାରେ ଓଡ଼ିଆ ସମାଜ, ୧୯୦୨ରେ ବ୍ରହ୍ମପୁରରେ ଓଡ଼ିଆ ଜାତୀୟ ସମିତି ଗଠନ କରାଯାଇଥିଲା । ୧୯୦୨ରେ ଖଲିକୋଟରେ ଗଞ୍ଜାମ ଜାତୀୟ ସମ୍ମୀଳନୀର ଆୟୋଜନ ହୋଇଥିଲା । ଶେଷରେ ୧୯୦୩ରେ କଟକରେ ଉତ୍କଳ ସମ୍ମିଳନୀ ଡ଼କାଯାଇ ଓଡ଼ିଶାର ସବୁ ଅଞ୍ଚଳର ଦେଶ ମିଶ୍ରଣ ଆନ୍ଦୋଳନ ଏକତ୍ର କରି ଏକ ସଂଗଠନ ଆରମ୍ଭ ହୋଇଥିଲା ।

୧୯୩୬ ଅପ୍ରେଲ୍ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା କିନ୍ତୁ ଆଜି ସୁଦ୍ଧା ପ୍ରତ୍ୟେକ ପଡ଼ୋଶୀ ପ୍ରଦେଶରେ ଓଡ଼ିଆ ଭାଷୀ ଅଞ୍ଚଳ ଅଛି । ୧୯୫୬ରେ ସୀମା ନିର୍ଦ୍ଧାରଣ କମିସନ୍ ମଧ୍ୟ ଓଡ଼ିଶ ନାଯ୍ୟ ଦାବି ଗ୍ରହଣ କଲେ ନାହିଁ ।

ବିର୍ତ୍ତମାନ ସୁଦ୍ଧା ଓଡ଼ିଶା ପ୍ରତ୍ୟେକ କ୍ଷେତ୍ରରେ କେନ୍ଦ୍ର ସରକାର ଦ୍ୱାରା ଅବହେଳିତ, ଓଡ଼ିଶାରେ ଦୃଢ଼ ନେତୃତ୍ୱର ଅଭାବ ହେତୁ ଓଡ଼ିଶାକୁ ଏହି ପରିସ୍ଥିତି ଭୋଗ କରିବାକୁ ପଡୁଛି । କେବେ ଯେ ଓଡ଼ିଶାରେ ଦୃଢ଼ ନେତୃତ୍ୱ ଆବିର୍ଭାବ ହୋଇ ଓଡ଼ିଶାର ନ୍ୟାଯ୍ୟ ଅଧିକାର ସାବ୍ୟସ୍ତ

କରିପାରିବ ତାହା ଭବିଷ୍ୟତ ହିଁ କହିବ ।

# ଓଡ଼ିଆ ଭାଷା

ଓଡ଼ିଆ ଭାଷା ପ୍ରାୟ ହଜାରେ ବର୍ଷ ପୁରାତନ ହେବା ସମ୍ଭାବନା । ସଂସ୍କୃତ ଏହାର ଜନନୀ, ସପ୍ତମ ଶତାବ୍ଦୀରେ ଓଡ଼ିଶା ଭ୍ରମଣରେ ଆସିଥିବା ହୁଏନ୍ତ୍ସାଂ ଓଡ଼ିଶାରେ ଏକ ସ୍ୱତନ୍ତ୍ର ଭାଷା ଥିବା ଉଲ୍ଲେଖ କରିଛନ୍ତି । ଅଷ୍ଟମ ଶତାବ୍ଦୀର ବୌଦ୍ଧଗାନ ଓ ଦୋହାରେ ଓଡ଼ିଆ ଭାଷାର ପ୍ରମାଣ ମିଳେ । ଏକାଦଶ ଶତାବ୍ଦୀର ମାଦଳା ପାଞ୍ଜିରୁ ଓଡ଼ିଆ ଭାଷା ପ୍ରଚଳନ ଦୃଷ୍ଟାନ୍ତ ମିଳେ । ତ୍ରୟୋଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ଓ ସାହିତ୍ୟ ଏକ ନିର୍ଦ୍ଦିଷ୍ଟ ରୂପ ରେଖ ଗ୍ରହଣ କରିଥିଲା । ପଞ୍ଚଦଶ ଶତାବ୍ଦୀ ବେଳକୁ ଶାରଳା ଦାସ ମହାଭାରତ ଏବଂ ଷୋଡ଼ଷ ଶତାବ୍ଦୀରେ ଜଗନ୍ନାଥ ଦାସଙ୍କ ଭାଗବତ ଏବଂ ପଞ୍ଚସଖାଙ୍କ ସାହିତ୍ୟ ସମୃଦ୍ଧି ଲାଭ କରିଥିଲା । ପଞ୍ଚସଖା ଯୁଗରେ ଧର୍ମ ଓ ଭକ୍ତି ସାହିତ୍ୟର ସୃଷ୍ଟି ହୋଇଥିଲା ଏବଂ ସପ୍ତଦଶ ଶତାବ୍ଦୀରେ ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟରେ ରୀତି ଯୁଗର ଭବଧାରା ଶୃଙ୍ଗାର ରସ ଉପରେ ଆଧାରିତ ଥିଲା । ସଂସ୍କୃତ ସାହିତ୍ୟର ସାରବତ୍ତା ସଂଗ୍ରହ କରି ସେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ନୂତନ ଆଭିଜାତ୍ୟ ପ୍ରଦାନ କରିଥିଲେ । ତାଙ୍କର ଓଡ଼ିଆ ଲେଖା ସଂସ୍କୃତ ପଣ୍ଡିତମାନଙ୍କୁ ଚକିତ କରିଥିଲା । ଓଡ଼ିଆ ଭାଷାର ପ୍ରାଚୀନତା, ମୌଳିକତା ଏବଂ ପ୍ରାଚୁର୍ଯ୍ୟ ସଂପର୍କରେ ଭାଷାବିତ୍‌ମାନେ ମତ ଦେଇଛନ୍ତି ।

ମୁକୁନ୍ଦ ଦେବଙ୍କ ପରେ ଓଡ଼ିଶାରେ ଆଫଗାନ୍, ମୋଗଲ, ମରହଟ୍ଟା ଏବଂ ବ୍ରିଟିଶ ଶାସନ କାଳରେ ଓଡ଼ିଆ ଭାଷା ସମୃଦ୍ଧ ଥିଲେ ସୁଦ୍ଧା ଓଡ଼ିଆ ପରିବର୍ତ୍ତେ ପାରସୀ ଓ ଇଂରେଜି ରାଜ ଭାଷା ଥିଲା । ବିଦ୍ୟାଳୟମାନଙ୍କରେ ଓଡ଼ିଆରେ ଶିକ୍ଷା ଦେବା ପରିବେର୍ତ୍ତେ ଗଞ୍ଜାମ ଓ କୋରାପୁଟରେ ତେଲୁଗୁରେ, ସମ୍ବଲପୁରରେ ହିନ୍ଦିରେ ଏବଂ କଟକ, ପୁରୀ ଓ ବାଲେଶ୍ୱରରେ ବଙ୍ଗଳା ମାଧ୍ୟମରେ ଶିକ୍ଷା ଦିଆଗଲା । ଏହା ବିରୁଦ୍ଧରେ ତୀବ୍ର ପ୍ରତିବାଦ ହେଲା । ଫଳରେ ବିଦ୍ୟାଳୟରେ ଶିକ୍ଷାଦାନ ଓଡ଼ିଆରେ ପ୍ରଚଳନ ହେଲା ଏବଂ ଓଡ଼ିଆ ଭାଷାକୁ ସରକାରୀ ଭାଷା ଭାବରେ ବ୍ୟବହାର କରିବାକୁ ନିର୍ଦ୍ଦେଶ ଦିଆଗଲା ।

ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେ ବୋଲି ସେମାନେ କହିଲେ । ଇଂରେଜ ଅମଳରେ ପ୍ରାୟ ସବୁ ଚାକିରିଆ ବଙ୍ଗାଳି, ତେଲୁଗୁ କିମ୍ବା ହିନ୍ଦି ଭାଷୀ ଥିଲେ । ତେଣୁ ସେମାନେ ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟ କରିବା ପାଇଁ ପ୍ରତିବାଦ କରିବା ସ୍ୱାଭାବିକ । ପାଠ୍ୟପୁସ୍ତକର ଅଭାବ ଦର୍ଶାଇ ବିଦ୍ୟାଳୟମାନଙ୍କରେ ମଧ୍ୟ ବଙ୍ଗାଳିରେ ଶିକ୍ଷା ଦାନ ବ୍ୟବସ୍ଥା ହେଲା ।

ଓଡ଼ିଶାର ବରପୁତ୍ରଗଣ ଏହି ଚକ୍ରାନ୍ତ ପଣ୍ଡ କରିଥିଲେ । ଏଥିରେ ଅଗ୍ରଣୀ ଥିଲେ

ଗୌରିଶଙ୍କର ରାୟ, ରାଧାନାଥ ରାୟ, ଗଙ୍ଗାଧର ମେହେର, ଫକୀର ମୋହନ ସେନାପତି, ମଧୁସୂଦନ ଦାସ, ନୀଳମଣୀ ବିଦ୍ୟାରତ୍ନ, କୃଷ୍ଣଚନ୍ଦ୍ର ଗଜପତି, ବିକ୍ରମ ଦେବ, ରାମଚନ୍ଦ୍ର ଦେବ, ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ, ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ।

ଅନ୍ୟ ପ୍ରଦେଶ ତୁଳନାରେ ଇଂରେଜମାନେ ବହୁ ପଛରେ ଓଡ଼ିଶା ଅଧିକାର କରିଥିଲେ ।ତେଣୁ ଓଡ଼ିଶାରେ ଆଧୁନିକ ଶିକ୍ଷା ବ୍ୟବସ୍ଥା ପ୍ରଚଳନ କରିବାରେ ମଧ ଡ଼େରି ହୋଇଥିଲା । ୧୮୨୨ରୁ ମିଶନାରୀମାନଙ୍କ ଦ୍ଵାରା ପ୍ରଥମେ ଆଙ୍ଗ୍ଲୋ-ଭେର୍ନାକୁଲାର ସ୍କୁଲ ଖୋଲିଲା ୧୮୪୧ରେ ଘରୋଇ ପ୍ରଚେଷ୍ଟାରେ ପ୍ରଥମେ କଟକରେ ଗୋଟିଏ ଜିଲ୍ଲା ସ୍କୁଲ ଆରମ୍ଭ ହୋଇଥିଲା ।

ଓଡ଼ିଶାରେ ଶିକ୍ଷା ପରିଚାଳନା ଦାୟିତ୍ୱ ପ୍ରଥମେ କଲିକତା ବିଶ୍ୱବିଦ୍ୟାଳୟ ଏବଂ ପରେ ପାଟଣା ବିଶ୍ୱବିଦ୍ୟାଳୟ ଏବଂ ଦକ୍ଷିଣ ଓଡ଼ିଶାରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ହୋଇଥିଲା । ୧୯୪୫ରୁ ଉତ୍କଳ ବିଶ୍ୱ ବିଦ୍ୟାଳୟ ହେଲା ।

୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ବେଳକୁ ସମଗ୍ର ଓଡ଼ିଶାରେ ଗଡ଼ଜାତ ସହ ମାତ୍ର ଚାରିଗୋଟି କଲେଜ୍ ଏବଂ ୩୪ଟି ହାଇ ସ୍କୁଲ ଥିଲା । ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଶିକ୍ଷା କ୍ଷେତ୍ରରେ ଓଡ଼ିଶା ବହୁତ ପଛରେ ଥିଲା ।

୧୯୫୬ରୁ ଓଡ଼ିଆ ଭାଷାକୁ ସରକାରୀ ଭାଷାରୂପେ ବ୍ୟବହାର କରିବାକୁ ସରକାର ସ୍ଥିର କରିଥିଲେ ସୁଦ୍ଧା ଏହା ସଂପୂର୍ଣ୍ଣ ରୂପେ କାର୍ଯ୍ୟକାରୀ ହେଉନାହିଁ ।

ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଲୋପ ହେବାକୁ ବସିଲାଣି । ପଡ଼ୋଶୀ ପ୍ରଦେଶ ତୁଳନାରେ ଓଡ଼ିଆ ଭାଷା ଆଶାନୁରୂପ ଉନ୍ନତି ହୋଇ ପାରିନାହିଁ ।

## ଶ୍ରୀ ଜଗନ୍ନାଥ ଧାମ

ବିଶ୍ୱର ଦେବତା ହେଉଛନ୍ତି ଜଗନ୍ନାଥ । ତାଙ୍କର କ୍ଷେତ୍ର ଶ୍ରୀ କ୍ଷେତ୍ର ଅର୍ଥାତ୍ ପୁରୀ । ଶ୍ରୀ ଜଗନ୍ନାଥଙ୍କ ତତ୍ତ୍ୱ ଅଦ୍ଭୁତ୍, ଅପାର, ରହସ୍ୟାବୃତ, ଆନନ୍ଦ ଦାୟକ ଓ ହୃଦୟସ୍ପର୍ଶୀ । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପରେ ତାଙ୍କର ଦେହାବଶେଷ ସମୁଦ୍ରରେ ଭାସି ଆସି ପୁରୀର ସମୁଦ୍ରକୂଳରେ ଲାଗିଥିଲା । ତାହା ପ୍ରଥମେ ଆଦିବାସୀ ଶବର ବିଶ୍ୱାବସୁଙ୍କ ଦ୍ୱାରା ନୀଳମାଧବ ରୂପେ ପୂଜା ପାଉଥିଲେ । ପରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ନୀଳମାଧବ ଚତୁର୍ଦ୍ଧାମୂର୍ତ୍ତୀ ହୋଇ ପୁରୀରେ ପ୍ରତିଷ୍ଠିତ କରାଯାଇଥିଲା ।

ଋଗ୍ ବେଦଠାରୁ ଆରମ୍ଭ କରି ଅନେକ ପୁରାଣ ଓ ଧର୍ମ ଶାସ୍ତ୍ରରେ ଜଗନ୍ନାଥଙ୍କ ମହିମା ଉଲ୍ଲେଖ ଅଛି । ଦେଶ, ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ନିର୍ବିଶେଷରେ ସେ ସମସ୍ତଙ୍କର ଉପାସ୍ୟ । ଭାରତର ଚାରୋଟି ଧାମ ମଧ୍ୟରେ ଜଗନ୍ନାଥ ଧାମ ପ୍ରଧାନ । ଆଦି ଶଙ୍କରାଚାର୍ଯ୍ୟ ଏଠାରେ ଗୋବର୍ଦ୍ଧନ ମଠ ସ୍ଥାପନ କରିଥିଲେ ।

ବିଭିନ୍ନ ଧର୍ମର ମହାପୁରୁଷମାନେ ଜଗନ୍ନାଥ ଧାମ ଆସି ତାଙ୍କୁ ସ୍ୱୀକାର କରିଛନ୍ତି । ଅଦ୍ୱୈତବାଦୀ ଆଦି ଶଙ୍କରାଚାର୍ଯ୍ୟ, ବିଶିଷ୍ଟ ଦ୍ୱୈତବାଦୀ ରାମାନୁଜ, ମୂର୍ତ୍ତିପୂଜା ବିରୋଧୀ ବିଖ୍ୟାତ ତାନ୍ତ୍ରିକ ଶଙ୍କର ଦେବ, ଶ୍ରୀ ଚୈତନ୍ୟ, କବୀର, ନାନକ, ଖ୍ରୀଷ୍ଟଧର୍ମର ପ୍ରବର୍ତ୍ତକ ଯିଶୁଖ୍ରୀଷ୍ଟ ପ୍ରଭୃତି ଜଗନ୍ନାଥଙ୍କ ମହିମାରେ ଆକୃଷ୍ଟ ହୋଇ ପୁରୀ ଆସିଛନ୍ତି । ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ବୌଦ୍ଧ, ଜୈନ ଆଦି ବିଭିନ୍ନ ମତର ଏହା ସମନ୍ୱୟସ୍ଥଳ । ବିଭିନ୍ନତା ମଧ୍ୟରେ ଏକତା, ସର୍ବଧର୍ମ ସମନ୍ୱୟ, ଜଗନ୍ନାଥ ଧର୍ମର ବୈଶିଷ୍ଟ୍ୟ ।

ଓଡ଼ିଶାର ଧର୍ମ ଜଗନ୍ନାଥ ଧର୍ମ । ଓଡ଼ିଶାର ସଂସ୍କୃତି , ପର୍ବପର୍ବାଣୀ, ସାହିତ୍ୟ, ଇତିହାସ ପ୍ରଭୃତି ଜଗନ୍ନାଥଙ୍କ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଜଗନ୍ନାଥ ଧର୍ମ ପ୍ରଚାର କରିବାରେ ପଞ୍ଚସଖାଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱ ପୂର୍ଣ୍ଣ ।

ଜଗନ୍ନାଥଙ୍କ ଅପାର ପ୍ରଭାବ ଓ ପ୍ରାଧାନ୍ୟ ଲକ୍ଷକରି ପୁରୀର ଗଜପତି ରାଜା ଜଗନ୍ନାଥଙ୍କ ମୁଖ୍ୟ ଓ ପ୍ରଥମ ସେବକ ବା ଦାସ ରୂପେ ନିଜକୁ ପରିଚିତ କରୁଛନ୍ତି । ଆଜି ସୁଦ୍ଧା ଏହି ପରମ୍ପରା ଅଛି । ରଥଯାତ୍ରା ସମୟରେ ଗଜପତି ରାଜା ଝାଡୁଧରି ଛେରାପହଁରା କରନ୍ତି ।

ଆଫଗାନି ଓ ମୋଗଲ ଶାସନରେ ଜଗନ୍ନାଥଙ୍କ ପୁରୀ ମନ୍ଦିର ଅନେକଥର ଲୁଣ୍ଠନ ହୋଇଛି ଏବଂ ମନ୍ଦିର କିଛି ଅଂଶ ଏବଂ ପାର୍ଶ୍ୱ ମୂର୍ତ୍ତି ନଷ୍ଟ କରାଯାଇଛି । କିନ୍ତୁ ଜଗନ୍ନାଥ ବିଗ୍ରହକୁ ପାତାଳୀ କରାଯାଇଥିଲା ଅର୍ଥାତ୍ ଲୁଚାଇ ରଖାଯାଇଥିଲା ।

ବ୍ରିଟିଶ୍ ଶାସନ କାଳରେ ପୁରୀର ଗଜପତି ରାଜାଙ୍କୁ ମନ୍ଦିର ପରିଚାଳନା ଦାୟିତ୍ୱରୁ କ୍ଷୁର୍ଣ୍ଣ କରାଯାଇଥିଲେ ସୁଦ୍ଧା ଜଗନ୍ନାଥ ମନ୍ଦିର କିଛି କ୍ଷତି କରି ନଥିଲେ । ବ୍ରିଟିଶ୍ ସରକାର କିଛି ସମୟ ଜଗନ୍ନାଥ ମନ୍ଦରରେ ପୁରୀ ରାଜାଙ୍କର ଅଧିକାର ଛଡ଼ାଇ ନେଇଥିଲେ କିନ୍ତୁ ଉତ୍କଳ ଗୌରବ ମଧୁସୂଦନ ଦାସ ମକଦ୍ଦମାରେ ପୁରୀ ରାଜାଙ୍କର ପକ୍ଷରେ ଲଢ଼ି ସେହି ଅଧିକାର ରକ୍ଷା କରିଥିଲେ ।

ଭାରତ ସ୍ୱାଧୀନ ହେବା ପରେ ଜମିଦାରୀ ଉଚ୍ଛେଦ ଆଇନ ପ୍ରଚଳନ ହେଲା । ଏଥିରୁ ଜଗନ୍ନାଥ ମଧ୍ୟ ବାଦ ପଡ଼ିଲେ ନାହିଁ । ଜଗନ୍ନାଥଙ୍କୁ ଦାନ ସୂତ୍ରରେ ହଜାର ହଜାର ଏକର ଭୂ-ସଂପତ୍ତି ମିଳିଥିଲା । ଏହି ଭୂମି ଚାଷ କରୁଥିବା ଚାଷିଙ୍କୁ ଜମିଦାରୀ ଉଚ୍ଛେଦ ଆଇନ ଫଳରେ

ମାଲିକାନା ଅଧିକାର ମିଳିଲା । ସରକାର ଜଗନ୍ନାଥଙ୍କୁ ଉଚିତ କ୍ଷତିପୂରଣ ଦେବା କଥା, କିନ୍ତୁ ଜଗନ୍ନାଥଙ୍କ ପାଇଁ ମକଦ୍ଦମା ଲଢ଼ିବ କିଏ ? ଆଜି ସୁଦ୍ଧା ଜଗନ୍ନାଥ ଉଚିତ କ୍ଷତିପୂରଣରୁ ବଞ୍ଚିତ ।

ସରକାରଙ୍କ ଅନୁଦାନରେ ଜଗନ୍ନାଥ ଘର ସଂସାର, ଯାତ୍ରା, ପର୍ବପର୍ବାଣୀ, ସେବକଙ୍କର ଦରମା ଆଦି ଚଳୁଛି । ଅନୁଦାନ ବନ୍ଦ କରିଦେଲେ କିମ୍ବା ଉପଯୁକ୍ତ ଅନୁଦାନ ନ ଦେଲେ ମନ୍ଦିର ପରିଚାଳନା ଅଚଳ ହେବ ।

ରାଜ୍ୟ ସରକାର ମନ୍ଦିର ପରିଚାଳନା ପାଇଁ ଏକ ଟ୍ରଷ୍ଟ କରିଛନ୍ତି । ପରିଚାଳନା ଦାୟିତ୍ୱ ଏକ କମିଟି ହାତରେ ଅଛି । ଅର୍ଥାଭାବରୁ ମନ୍ଦିର ପରିଚାଳନାରେ ନାନା ସମସ୍ୟା ସୃଷ୍ଟି ହେଉଛି ।

ଧର୍ମନିରପେକ୍ଷ ସରକାରଙ୍କ ପକ୍ଷରେ ମନ୍ଦିର ପରିଚାଳନାରେ ହସ୍ତକ୍ଷେପ କରିବା ଉଚିତ କି? ମନ୍ଦିର ପରିଚାଳନା ଦାୟିତ୍ୱରୁ ସରକାର ସଂପୂର୍ଣ୍ଣ ରୂପେ ଅଲଗା ରହିବା ଉଚିତ ।

***ଜୟ ଜଗନ୍ନାଥ***

ଜଗଦାନନ୍ଦ କନ୍ଦାୟ ପ୍ରଣତାର୍ତ୍ତି ହରାୟଚ
ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ
ବଳଭଦ୍ର ସୁଭଦ୍ରାୟାଂ ଜଗନ୍ନାଥାୟତେ ନମଃ ।

* * * * * * *

# ପରିଶିଷ୍ଟ-୧

## ନାରାୟଣ ପଣ୍ଡାଙ୍କ ବଂଶାନୁକ୍ରମିକ ୧ମ ଭାଗ(ଗୁଡ଼ିଆଳିରୁ ନାରାୟଣ ପଣ୍ଡା ପ୍ରଥମେ ଆସିଥିଲେ)

- ନାରାୟଣ ପଣ୍ଡା
  - ବିଷ୍ଣୁ ପଣ୍ଡା
    - ଲୋକନାଥ ପଣ୍ଡା
      - ରାମଚନ୍ଦ୍ର ପଣ୍ଡା
        - ବିନାୟକ
          - ଦିନବନ୍ଧୁ
            - ବ୍ରଜ
              - ଶ୍ୟାମ
                - ପ୍ରେମ
                - ଶଚି
                - ନିତ୍ୟାନନ୍ଦ
                - ପୂର୍ଣ୍ଣ
                - ଚିଦାନନ୍ଦ
            - ଦାମ
              - ବିପ୍ର
              - ନିମାଇଁ
              - ଚନ୍ଦ୍ର
              - ରମେଶ
            - ବୃନ୍ଦାବନ
              - କିଶୋର
                - ପ୍ରଭାକର
                - କାଳିଆ
          - ଶିବନାରାୟଣ (ନରହରିଙ୍କୁ ଦତ୍ତ)
        - ନରହରି
          - ଶିବ ନାରାୟଣ
            - ଦଣ୍ଡପାଣି
              - ଶକ୍ତି
              - ବିଭୂତି
            - ମଦନ
              - ବିଦ୍ୟା
              - ହୃଦା
              - ବିବେକାନନ୍ଦ
            - ଚୈତନ୍ୟ
              - ଭାରତୀ ଭୂଷଣ
    - ପୁର(ନିଅଂଶ)
    - ମାଧବ (ନିଅଂଶ)
    - ଚୈତନ୍ୟ ପଣ୍ଡା
      - ପତିତ ପଣ୍ଡା
        - ସନ୍ୟାସି
          - ମାଧବ
            - ଭାଗିରଥି
              - ପଦ୍ମ
                - ହରିକୃଷ୍ଣ
                - ଦେବେନ୍ଦ୍ର
                - ରମଣ
              - ସୁଭାଷ
          - ମାର୍କଣ୍ଡ
            - ଭାଗିରଥି(ମାଧବଙ୍କୁ ଦତ୍ତ)
            - ଗଙ୍ଗା
              - ରାମଚନ୍ଦ୍ର
        - ଶ୍ରୀଧର
          - ଗୋବିନ୍ଦ
            - ଗଣେଶ
              - ଭୃଗୁ
            - ରବି
            - ପ୍ରକାଶ
          - ସୋମନାଥ
            - ଯୋଗେନ୍ଦ୍ର
              - ରାମହରି
              - ସୁନା
              - ହୃଷିକେଶ
              - ଶ୍ୟାମ
        - ରଘୁ(ନିଅଂଶ)
  - କେଶବ ପଣ୍ଡା
    - ଗୋବିନ୍ଦ
    - ବୃନ୍ଦାବନ
    - ବାସୁ

' ଅବଶିଷ୍ଟ ଦ୍ୱିତୀୟ ଭାଗରେ ଉଲ୍ଲେଖ କରାଗଲା ।

# ପରିଶିଷ୍ଟ-୧

## ନାରାୟଣ ପଣ୍ଡାଙ୍କ ବଂଶାନୁକ୍ରମିକ ୨ୟ ଭାଗ

- ନାରାୟଣ ପଣ୍ଡା
  - କେଶବ ପଣ୍ଡା
    - ଗୋବିନ୍ଦ
      - ଦାସରଥି
        - ଗୌରହରି
          - ଦେବରାଜ
            - ଆଦିକନ୍ଦ
              - ବାଉରୀ
              - ହାଡୁ
        - ଅରାଧି
          - ସତ୍ୟବାଦି
            - ଲୋକନାଥ
              - କୃଷ୍ଣପଣ୍ଡା
            - ବାସୁ(ବିଶ୍ୱନାଥଙ୍କୁ ଦତ୍ତ)
          - ବିଶ୍ୱନାଥ
            - ବାସୁ
              - କୃଷ୍ଣ(ଲୋକନାଥଙ୍କୁ ଦତ୍ତ)
              - ଲକ୍ଷ୍ମୀ ଚରଣ
      - ଲକ୍ଷ୍ମଣ (ବୃନ୍ଦାବନଙ୍କୁ ଦତ୍ତ)
    - ବୃନ୍ଦାବନ
      - ଲକ୍ଷ୍ମଣ
    - ବାସୁ
      - ଶୁକ
        - ଦୟାନିଧି
          - ପୁରୁଷୋତ୍ତମ
            - କିଶୋର
              - ଗୋପାଳ
              - ଗୋକୁଳ
            - ଶରତ
            - ବିନୋଦ
        - ଯୁଧିଷ୍ଠି
          - କପିଳ
            - ଭାସ୍କର
          - ବଟ
            - ଲିଙ୍ଗରାଜ
            - ବୁଲୁ
            - ଟୁଲୁ
        - ବ୍ରଜ
          - ନାରଣ
            - କୋରା
        - ଗଦାଧର
          - ଦଣ୍ଡାସି
            - ସନ୍ତୋଷ
            - ଶ୍ରୀନିବାସ
            - ମିଟୁ
        - ଭାଗିରଥି
          - ଅନ୍ତର୍ଯ୍ୟାମି
        - ମୋହନ(ଅର୍ତ୍ତଙ୍କୁ ଦତ୍ତ)
      - ଅର୍ତ୍ତ
        - ମୋହନ
          - ଲଡୁ
            - ସୁଦାମ
          - ବିପ୍ର
      - ପ୍ରହ୍ଲାଦ(ନିଅଂଶ)
  - ବିଷ୍ଣୁ ପଣ୍ଡା
    ଅବଶିଷ୍ଟ ୧ମ ଭାଗରେ ଉଲ୍ଲେଖ ଅଛି ।

# ପରିଶିଷ୍ଟ-୨

# ଅଭିମତ

ଶ୍ରୀ ଦଣ୍ଡପାଣି ପଣ୍ଡାଙ୍କ ଦ୍ୱାରା ଲିଖିତ ଚାରିଗୋଟି ପୁସ୍ତକ ସମ୍ବନ୍ଧରେ ବିଭିନ୍ନ ପତ୍ର ପତ୍ରିକାରେ ଯେଉଁ ପୁସ୍ତକ ସମୀକ୍ଷା ପ୍ରକାଶ ପାଇଛି ତାହା ନିମ୍ନରେ ଦିଆଗଲା ।

## *ଫଳିତ ଜ୍ୟୋତିଷ*

*(ପ୍ରକାଶ, ୧୯୯୦, ପୃଷ୍ଠା ୧୩୮, ମୂଲ୍ୟ ଟ୧୫)*

### *ପୁସ୍ତକ ଉନ୍ମୋଚନ*

**(୧) ସମାଜ, ତା ୧୯.୧୧.୯୦**

**'ଫଳିତ ଜ୍ୟୋତିଷ' ପୁସ୍ତକ ଉନ୍ମୋଚିତ:-** ଭୁବନେଶ୍ୱର, ତା ୧୫.୧୧ - ସ୍ଥାନୀୟ ସାମନ୍ତ ଚନ୍ଦ୍ରଶେଖର ସ୍ମୃତି ପରିଷଦର କର୍ଯ୍ୟକାରୀ ସମିତି ସଦସ୍ୟ ଶ୍ରୀ ଦଣ୍ଡପାଣି ପଣ୍ଡା, ଜ୍ୟୋତିଷ ପ୍ରବୀଣଙ୍କ ଦ୍ୱାରା ଲିଖିତ 'ଫଳିତ ଜ୍ୟୋତିଷ' ଶୀର୍ଷକ ପୁସ୍ତକ ପରିଷଦର ସଭାପତି ଶ୍ରୀ ଗୋପୀନାଥ ଦାସଙ୍କ ଦ୍ୱାରା ଉନ୍ମୋଚିତ ହୋଇଛି । ଏହି ଉପଲକ୍ଷେ ଆୟୋଜିତ ସଭାରେ ସର୍ବଶ୍ରୀ ରାମଚନ୍ଦ୍ର ହରିଚନ୍ଦନ, ଜ୍ୟୋତିର୍ବିଦ୍ୟା ବାଚସ୍ପତି, ଅଧ୍ୟାପକ ଦେବରାଜ ପାଠୀ, ଦୟାନିଧି ମହାନ୍ତି, ଡ଼ାଃ ଅଜିତ କୁମାର ମହାପାତ୍ର, ସୁରେଶ କୁମାର ଛୋଟରାୟ, ଚକ୍ରପାଣି ଶତପଥୀ, କିଶୋର ଚନ୍ଦ୍ର ଶତପଥୀ, ଗୋଲକଚନ୍ଦ୍ର ବିହାରୀ ପ୍ରମୁଖ ବକ୍ତାମନେ ପୁସ୍ତକଟିର ଉପାଦେୟତା ସମ୍ପର୍କରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରିଥିଲେ । ଶେଷରେ ସମ୍ପାଦକ ଶ୍ରୀ ଭାସ୍କରଚନ୍ଦ୍ର ପଣ୍ଡା ଧନ୍ୟବାଦ ଅର୍ପଣ କରିଥିଲେ ।

**(୨) ସମ୍ବାଦ, ତା ୮.୧୧.୯୦:-** ଭୁବନେଶ୍ୱର, ୭/୧୧ : ସ୍ଥାନୀୟ ସମାନ୍ତ ଚନ୍ଦ୍ରଶେଖର ସ୍ମୃତି ପରିଷଦର କାର୍ଯ୍ୟକାରୀ ସମିତି ସଦସ୍ୟ ଶ୍ରୀ ଦଣ୍ଡପାଣି ପଣ୍ଡାଙ୍କ ଦ୍ୱାରା ଲିଖିତ "ଫଳିତ ଜ୍ୟୋତିଷ" ଶୀର୍ଷକ ଏକ ପୁସ୍ତକ ଗତ ୨୮ ତାରିକ ଦିନ ଉନ୍ମୋଚିତ ହୋଇଯାଇଛି । ଏହାକୁ ପରିଷଦର ସଭାପତି ଶ୍ରୀ ଗୋପୀନାଥ ଦାସ ଉନ୍ମୋଚିତ କରିଥିଲେ ।ଏହି ଉଦ୍ଦେଶ୍ୟରେ ଆୟୋଜିତ ସଭାରେ ସର୍ବଶ୍ରୀ ରାମଚନ୍ଦ୍ର ହରିଚନ୍ଦନ, ଅଧ୍ୟାପକ ଦେବରାଜ ପାଠୀ, ଦୟାନିଧି ମହାନ୍ତି, ଡ଼ାକ୍ତର ଅଜିତ କୁମାର ମହାପାତ୍ର, ସୁରେଶ କୁମାର ଛୋଟରାୟ, ଚକ୍ରପାଣି ଶତପଥୀ, କିଶୋର ଚନ୍ଦ୍ର ଶତପଥୀ, ଗୋଲକଚନ୍ଦ୍ର ବିହାରୀ ପ୍ରମୁଖ ଯୋଗ ଦେଇଥିଲେ । ପରିଷଦର ସମ୍ପାଦକ ଶ୍ରୀ ଭାସ୍କରଚନ୍ଦ୍ର ପଣ୍ଡା ଧନ୍ୟବାଦ ପ୍ରଦାନ କରିଥିଲେ ।

(୩) ଦିନ ଲିପି, ୩୧.୧୦.୧୯୯୦:- ଭୁବନେଶ୍ୱର, ୩୧/୧୦ ସ୍ଥାନୀୟ ସମାନ୍ତ ଚନ୍ଦ୍ରଶେଖର ସ୍ମୃତି ପରିଷଦର କାର୍ଯ୍ୟକାରୀ ସମିତିର ସଦସ୍ୟ ଶ୍ରୀ ଦଣ୍ଡପାଣି ପଣ୍ଡା, ଜ୍ୟୋତିଷ ପ୍ରବୀଣଙ୍କ ଦ୍ୱାରା ଲିଖିତ ‘ ଫଳିତ ଜ୍ୟୋତିଷ’ ଶୀର୍ଷକ ପୁସ୍ତକ ପରିଷଦର ସଭାପତି ଶ୍ରୀ ଗୋପୀନାଥ ଦାସଙ୍କ ଦ୍ୱାରା ଗତ ତା ୨୮.୧୦.୯୦ ରିଖ ଦିନ ଉନ୍ମୋଚିତ ହୋଇଛି । ଏହି ପୁସ୍ତକଟି ଓଡ଼ିଆ ଭାଷାରେ ଏକ ନୂତନ ପଦକ୍ଷେପ । ପରିଷଦର ସଭାପତି ତଥା ପୁସ୍ତକର ଉନ୍ମୋଚକେ ଶ୍ରୀଯୁକ୍ତ ଦାସ ପୁସ୍ତକଟିକୁ ବିଭିନ୍ନ ଦିଗରୁ ସମୀକ୍ଷା କରି ଏହାର ବୈଶିଷ୍ଟ ପ୍ରତିପାଦନ କରିଥିଲେ । ପରିଶେଷରେ ସମ୍ପାଦକ ଶ୍ରୀ ଭାସ୍କର ଚନ୍ଦ୍ର ପଣ୍ଡା ଧନ୍ୟବାଦ ଅର୍ପଣ କରିଥିଲେ ।

## ପୁସ୍ତକ ସମୀକ୍ଷା

(୧) ସମାଜ, ତା ୨୫.୮.୯୧ :-ଫଳିତ ଜ୍ୟୋତିଷ ପୁସ୍ତକଟିର ଲେଖକ ସୃଷ୍ଟିର ବୈଚିତ୍ର୍ୟଠାରୁ ଆରମ୍ଭ କରି ଜ୍ୟୋତିଷ ଶାସ୍ତ୍ର କ'ଣ, ମନୁଷ୍ୟ ଉପରେ ଗ୍ରହ, ନକ୍ଷତ୍ରମାନଙ୍କର ପ୍ରଭାବ, ଜ୍ୟୋତିଷ ଶାସ୍ତ୍ରର ଇତିହାସ, ଧର୍ମ ଓ ସମାଜ ସହ ଏହାର ସଂପର୍କ, କର୍ମବାଦ, ଗ୍ରହଶାନ୍ତିର ଉପାୟ ଇତ୍ୟାଦି ସଂପର୍କରେ ତଥ୍ୟ ପ୍ରଦାନ କରିବା ସଂଗେ ସଂଗେ ଫଳିତ ଜ୍ୟୋତିଷର ମହନୀୟତା ପ୍ରତିପାଦିତ କରିଛନ୍ତି ।

(୨) ପ୍ରଜାତନ୍ତ୍ର, ତା ୧୨.୧୧.୯୦ :- ଜ୍ୟୋତିଷ ପ୍ରବୀଣ ଶ୍ରୀ ଦଣ୍ଡପାଣି ପଣ୍ଡାଙ୍କ ଲିଖିତ ‘ଫଳିତ ଜ୍ୟୋତିଷ’ ପୁସ୍ତକଟି ସଦ୍ୟ ପ୍ରକାଶିତ । ଏଥିରେ ଫଳିତ ଜ୍ୟୋତିଷର ପରିଚୟ ବିଶଦ ଭାବରେ ପ୍ରଦତ୍ତ ହୋଇଛି ଓ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର ମଧ କରାଯାଇଛି । ଫଳିତ ଜ୍ୟୋତିଷ ପ୍ରତି ଜନସାଧାରଣଙ୍କ ମନରେ ଉଚିତ ଧାରଣା ସୃଷ୍ଟି କରିବା ଓ ଭ୍ରାନ୍ତ ଧାରଣା ଦୂର କରିବା ପାଇଁ ଏହା ଏକ ସୁଉଦ୍ୟମ । ପୁସ୍ତକଟି ଓଡ଼ିଆ ଭାଷାରେ ଏ ଦିଗରେ ଏକ ଭିନ୍ନ ରୁଚିର ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜ୍ୟୋତିଷ କ'ଣ ? ମନୁଷ୍ୟ ଉପରେ ଗ୍ରହ ଓ ନକ୍ଷତ୍ରଙ୍କର ପ୍ରଭାବ, ଜ୍ୟୋତିଷର ଇତିହାସ, ଧର୍ମ, ଜ୍ୟୋତିଷ ଓ ସମାଜ, କର୍ମବାଦ ଓ ଜ୍ୟୋତିଷ, ଜ୍ୟୋତିଷର ଇତିହାସ, ଗ୍ରହଶାନ୍ତି କ'ଣ ? ପ୍ରଭୃତି ଅନେକ ବିଷୟ ଏହି ପୁସ୍ତକର ବିଭିନ୍ନ ଅଧ୍ୟାୟରେ ଆଲୋଚିତ ହୋଇଛି । ଜ୍ୟୋତିଷପ୍ରେମୀ ପାଠକଙ୍କ ନିକଟରେ ପୁସ୍ତକଟି ଆଦୃତ ହେବ ବୋଲି ଆଶା ।

(୩) ସମ୍ବାଦ, ତା ୯.୨.୯୧ :- ଫଳିତ ଜ୍ୟୋତିଷ ବା ଇଂରାଜୀରେ ଯାହାକୁ କହନ୍ତି ଏଷ୍ଟ୍ରୋଲଜି, ତା' ପ୍ରତି ଅନେକ ବ୍ୟକ୍ତିଙ୍କ ଧାରଣା ବଡ଼ ବିଚିତ୍ର ଓ ନକାରାତ୍ମକ ।

ଅନେକ ମନେ କରନ୍ତି ଯେ, ଫଳିତ ଜ୍ୟୋତିଷ ଅନ୍ଧବିଶ୍ୱାସ ବ୍ୟତୀତ ଆଉ କିଛି ନୁହେଁ । ଏହା ବିରୁଦ୍ଧରେ ହେଉଥିବା ଅଭିଯୋଗଗୁଡ଼ିକ ମଧ୍ୟ ଗୁରୁତର । ଯଥା ଫଳିତ ଜ୍ୟୋତିଷ ବୈଜ୍ଞାନିକ ସିଦ୍ଧାନ୍ତ ପ୍ରସୂତ ନୁହେଁ, ଏହା ମନୁଷ୍ୟଙ୍କୁ ଭାଗ୍ୟବାଦୀ କରାଏ , ଏହା ପ୍ରଗତିଶୀଳ ଚିନ୍ତାଧାରାରେ ପ୍ରତିବନ୍ଧକ ଇତ୍ୟାଦି । ଏତେ ସବୁ ଅଭିଯୋଗ ସତ୍ତ୍ୱେ ବିରାଟ ନାସ୍ତିକଙ୍କଠାରୁ ଆରମ୍ଭ କରି ଆଧ୍ୟାତ୍ମିକ ଚେତନଶୀଳ ବ୍ୟକ୍ତି ଓ ଜ୍ୟୋତିଷ ଶାସ୍ତ୍ର ପ୍ରତି ଅବଜ୍ଞା ଓ ଅସୂୟାଭାବ ପ୍ରଦର୍ଶନ କରୁଥିବା ସମସ୍ତ ବ୍ୟକ୍ତିଙ୍କର ଏହା ସଂପର୍କରେ ଜାଣିବାକୁ ଉତ୍କଣ୍ଠା ରହିଛି । ଏହି ଉତ୍କଣ୍ଠାର ପରିପୂରଣ ପାଇଁ ଲେଖକ ଦଣ୍ଡପାଣି ପଣ୍ଡାଙ୍କ 'ଫଳିତ ଜ୍ୟୋତିଷ' ପୁସ୍ତକ ଏକ ଉପଯୋଗୀ ପୁସ୍ତକ ହୋଇପାରିବ । ଲେଖକ ସ୍ପଷ୍ଟଭାବେ ପୁସ୍ତକର ଭୂମିକାରେ ଉଲ୍ଲେଖ କରିଛନ୍ତି ଯେ, ଯେଉଁମାନେ ଫଳିତ ଜ୍ୟୋତିଷ ବିରୋଧୀ, ତାଙ୍କ ମନରୁ ଭ୍ରାନ୍ତ ଧାରଣା ଦୂର କରିବା ସଙ୍ଗେ ସଙ୍ଗେ, ଯେଉଁମାନେ ଏହାର ସପକ୍ଷବାଦୀ ସେମାନେ ଯେପରି ଦୃଢ଼ତାର ସହିତ ଏହା ପ୍ରତିପାଦନ କରିପାରିବେ, ସେହି ଉଦ୍ଦେଶ୍ୟରେ ପୁସ୍ତକଟି ରଚିତ ।

ପୁସ୍ତକଟିରେ ଜ୍ୟୋତିଷବିଦ୍ୟାର ସୃଷ୍ଟି କିପରି ଓ କେଉଁଠୁ ହେଲା , ଏହାର ପ୍ରମାଣ ଯୋଗ୍ୟତା, ଗ୍ରହଶାନ୍ତି କ'ଣ, ଫଳିତ ଜ୍ୟୋତିଷ ପ୍ରତି ବିଶିଷ୍ଟ ବ୍ୟକ୍ତିଙ୍କ ମତାମତ ଆଦି ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଛି । ବ୍ରହ୍ମରୁ ବ୍ରହ୍ମାଣ୍ଡର ଉତ୍ପତ୍ତି, ବିବର୍ତ୍ତନ ବାଦ, ଜ୍ୟୋତିଷ ଶାସ୍ତ୍ରର ଉପକାର, ଭବିଷ୍ୟତବାଣୀର ସୀମା, ଏହାର ଦୁରୁପଯୋଗ, କର୍ମବାଦ ଓ ଜ୍ୟୋତିଷ, ମନୁଷ୍ୟ ଉପରେ ଗ୍ରହ ଓ ନକ୍ଷତ୍ରମାନଙ୍କର ପ୍ରଭାବ ଆଦି ତାତ୍ତ୍ୱିକ ଓ ଯୁକ୍ତିସିଦ୍ଧ ଆଲୋଚନାମାନ ମଧ୍ୟ ଏଥିରେ ସ୍ଥାନ ପାଇଛି । ବୃହତ୍ତର ପାଠକ ସମାଜକୁ ଆକୃଷ୍ଟ କରିବା ପାଇଁ ଏଥିରେ ବହୁ ଉପାଦାନ ରହିଛି । ଅନ୍ୟାନ୍ୟ ଭାଷାକୁ ଏହା ଅନୁବାଦ କରାଗଲେ ଲେଖକଙ୍କ ଉଦ୍ଦେଶ୍ୟର ପରିପୂରଣ ଦିଗରେ ତାହା ଏକ ବଳିଷ୍ଠ ପଦକ୍ଷେପ ହୋଇପରିବ ।

**(୪) ଦୈନିକ ଆଶା,** ତା ୪.୭.୧୯୯୦ :- ଏ ପୁସ୍ତକ ସନ୍ନବେଷିତ ଷୋହଳଟି ଅଧ୍ୟାୟରେ ଜ୍ୟୋତିଷ ଶାସ୍ତ୍ରକୁ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରାଯାଇଛି । ଧର୍ମଶାସ୍ତ୍ର, ବିଜ୍ଞାନ, ସମାଜ ଓ ଜନମାନସର ଜ୍ୟୋତିଷ ପ୍ରତି ଆଭିମୁଖ୍ୟ ଗଭୀର ଭାବେ ଅନୁଧ୍ୟାନ କରିବାରେ ଲେଖକ ସଫଳ ହୋଇଛନ୍ତି । ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀ ଠାରୁ ବିଂଶ ଶତାବ୍ଦୀ ଯାଏଁ ବହୁ ସ୍ୱନାମଧନ୍ୟ ଜ୍ୟୋତିର୍ବିଦଙ୍କର ଜନ୍ମ ଓ ରଚନାବଳୀ ସମ୍ପର୍କରତ ଅଧ୍ୟାୟ ପୁସ୍ତକର ଗୁରୁତ୍ୱ ବଢ଼ାଇ ଦେଇଛି ।

**(୫) ଦିନ ଲିପି,** ତା ୪।୪।୯୧ :- ଜ୍ୟୋତିଷ ଭିତ୍ତିକ ଭବିଷ୍ୟତ ବାଣୀ ପ୍ରତି ସମସ୍ତେ ଆଗ୍ରହୀ । ତଥାପି ଜ୍ୟୋତିଷକୁ ପ୍ରକୃତ ମର୍ଯ୍ୟାଦା ଦେବାକୁ ଲୋକେ କୁଣ୍ଠାବୋଧ

କରନ୍ତି । ଏଥିପ୍ରତି ଅନେକଙ୍କର ଭ୍ରାନ୍ତ ଧାରଣା ଅଛି । କେତେକଙ୍କ ମତରେ ଏହା ବିଜ୍ଞାନ ସମ୍ମତ ନୁହେଁ । ଅନ୍ୟ କେତେକଙ୍କ ମତରେ ଏହା ଅନ୍ଧ ବିଶ୍ୱାସ ।

ଏହି ପୁସ୍ତକରେ ଲେଖକ ଶ୍ରୀ ଦଣ୍ଡପାଣି ପଣ୍ଡା ଫଳିତ ଜ୍ୟୋତିଷ କ'ଣ ? ଗ୍ରହ ନକ୍ଷତ୍ରଙ୍କର ମନୁଷ୍ୟ ମନରେ କିପରି ପ୍ରଭାବ ପଡ଼େ ; ଜ୍ୟୋତିଷର ଇତିହାସ, ଧର୍ମ ଓ ସମାଜ ସହିତ ଏହାର ସମ୍ବନ୍ଧ, ଏହାର ଉପକାରୀତା ଇତ୍ୟାଦି ବିଷୟ ପ୍ରାଞ୍ଜଳ ଭାବରେ ବୁଝାଇଛନ୍ତି । ପ୍ରତ୍ୟେକ କ୍ଷେତ୍ରରେ ବେଦ, ଉପଦିଷଦ, ପୁରାଣ ଆଦି ଗ୍ରନ୍ଥରୁ ଶ୍ଳୋକ ଦିଆଯାଇ ମତଗୁଡ଼ିକୁ ସାବ୍ୟସ୍ତ କରାଯାଇଛି । ଜ୍ୟୋତିଷ ପ୍ରତି **ଯାହା ସବୁ ଅଭିଯୋଗ ଅଛି ଅକାଟ୍ୟ ଯୁକ୍ତି ଦେଇ ତାହା ସେ ଖଣ୍ଡନ କରିଛନ୍ତି** । ପୁରାଣ ଯୁଗଠାରୁ ଆରମ୍ଭ କରି ବର୍ତ୍ତମାନ ଯୁଗ ପର୍ଯ୍ୟନ୍ତ ଜ୍ୟୋତିଷ ଭିତ୍ତିକ ଭବିଷ୍ୟତବାଣୀ କିପରି ସଫଳତା ଲାଭ କରିଛି ତା'ର ଉଦାହରଣ ଦେଇ ଏହାର ସତ୍ୟତା ପ୍ରମାଣିତ କରିଛନ୍ତି । ଏହି ପୁସ୍ତକରେ ଭାରତର ବିଶିଷ୍ଟ ଆଧ୍ୟାତ୍ମିକ ବ୍ୟକ୍ତିଙ୍କ ଠାରୁ ଆରମ୍ଭ କରି ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିଙ୍କର ଜ୍ୟୋତିଷପ୍ରତି ମତାମତ ସବୁ ମଧ୍ୟ ଉଲ୍ଲେଖ କରାଯାଇଛି । ପ୍ରତ୍ୟେକ ଦିଗରୁ ବିଚାର କରି ଲେଖକ ଜ୍ୟୋତିଷର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି । ପାଠକ ମହଲରେ ପୁସ୍ତକଟି ଆଦୃତ ହେବ ବୋଲି ଆଶା ।

ପୁସ୍ତକରେ ଲେଖକ ତାଙ୍କର ଉଦ୍ଦେଶ୍ୟ ବିଷୟରେ ଲେଖିଛନ୍ତି ଯେ, ଯେଉଁମାନେ ଫଳିତ ଜ୍ୟୋତିଷର ବିରୋଧି ତାଙ୍କ ମନରୁ ଭ୍ରାନ୍ତଧାରଣା ଦୂର କରିବା ସଙ୍ଗେ ସଙ୍ଗେ, ଯେଉଁମାନେ ଏହାର ସପକ୍ଷବାଦୀ ସେମାନେ ଯେପରି ଦୃଢ଼ତାର ସହିତ ଏହା ପ୍ରତିପାଦନ କରନ୍ତି , ତାକୁ ହିଁ ଲକ୍ଷ୍ୟରେ ରଖି ଏହି ବହି ଲେଖିଛି । ତାଙ୍କର ଏହି ଉଦ୍ଦେଶ୍ୟ ସଫଳ କରିବାରେ ପୁସ୍ତକଟି ସାର୍ଥକ ହୋଇଛି ବୋଲି ମନେହୁଏ ।

**(୬) ନବୀନ,** ତା ୨.୨.୯୩:- ଏହି ବହିଟି ଫଳିତ ଜ୍ୟୋତିଷ ବିଷୟରେ ନୂତନ ପଦକ୍ଷେପ ।ଏଥିରେ ଫଳିତ ଜ୍ୟୋତିଷ ବିଷୟରେ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରାଯାଇଛି । ଫଳିତ ଜ୍ୟୋତିଷ ପ୍ରତି ଭ୍ରାନ୍ତ ଧାରଣା ଦୂର କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ଏହି ବିଷୟରେ ଉଚିତ ଧାରଣା ଦେବାରେ ଏହା ସହାୟକ ହେବ ବୋଲି ଆଶା ।

**(୭) ନିୟତି, ଅକ୍ଟୋବର, ୧୯୯୦** :- ଜ୍ୟୋତିର୍ବିଜ୍ଞାନର ସଂଜ୍ଞା ଦେଲାବେଳେ ଆଧୁନିକ ବୈଜ୍ଞାନିକମାନେ ତା' ଭିତରକୁ ଫଳିତ ଜ୍ୟୋତିଷ କାଳେ ପଶିଯିବ, ସେଥିପାଇଁ 'ପ୍ରବେଶ ନିଷେଧ' ଫଳକଟି ଲଗାଇ ଦେବାକୁ ଚେଷ୍ଟା କରୁଛନ୍ତି । ଫଳରେ, ସାଧାରଣ ଶିକ୍ଷିତ ଲୋକଙ୍କ ମନରେ ଫଳିତ ଜ୍ୟୋତିଷ ପ୍ରତି ଏକ ଦୋଳନାତ୍ମକ ମନୋଭାବ

ସୃଷ୍ଟି କରାଯାଉଛି । ଏହାକୁ ନିରାଶ କରିବା ପାଇଁ ଶ୍ରୀଯୁକ୍ତ ପଣ୍ଡା ପ୍ରଥମରୁ ଫଳିତ ଜ୍ୟୋତିଷର ସଂଜ୍ଞା ନିରୂପଣ କରିଛନ୍ତି :-

**''ଗ୍ରହ, ନକ୍ଷତ୍ର ଆଦି ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ସମ୍ବନ୍ଧରେ ବିଶେଷ ଜ୍ଞାନ ଏବଂ ସେମାନଙ୍କର ଏହି ପୃଥିବୀ ଓ ମନୁଷ୍ୟ ସମାଜ ଉପରେ ଯେଉଁ ପ୍ରଭାବ ପକାନ୍ତି ସେହି ଜ୍ଞାନକୁ ଜ୍ୟୋତିର୍ବିଜ୍ଞାନ କୁହାଯାଏ ।''** ଗ୍ରନ୍ଥକାରଙ୍କ ସହିତ ଏକମତ ହେଉଥିବା ମନୀଷୀମାନଙ୍କ ମଧ୍ୟରେ ଅଛନ୍ତି - ସ୍ୱାମୀ ବିବେକାନନ୍ଦ, ଯୋଗୀ ଶ୍ରୀ ଅରବିନ୍ଦ, ପରମହଂସ ଯୋଗାନନ୍ଦ, ଠାକୁର ଅନୁକୂଳ ଚନ୍ଦ୍ର, ବ୍ୟାସକବି ଫକିର ମୋହନ, ଡ଼କ୍ଟର ମହତାବ, କାଳିନ୍ଦୀଚରଣ ପାଣିଗ୍ରାହୀ, ଶ୍ରୀ ଶ୍ରଦ୍ଧାକର ସୁପକାର ପ୍ରଭୃତି । ଫଳିତ ଜ୍ୟୋତିଷର ଭବିଷ୍ୟତ ବିଷୟରେ ଲେଖକ ଆଶାବାଦୀ । କିନ୍ତୁ, ଫଳିତ ଜ୍ୟୋତିଷ ପ୍ରତି ଏବେ ଫଳଭିତ୍ତିକ ଦୃଷ୍ଟିଭଙ୍ଗି ବୈଜ୍ଞାନିକମାନେ ବି ରଖୁଥିବା ଦେଖାଯାଉଚି ।

ଦାମ୍- ମହାରାଜ, କି ଗାଙ୍ଗୁରାମ୍, କି ସାଉଥ ଇଣ୍ଡିଆନ୍ କାଫେ, ପ୍ରାଚୀରପତ୍ର କି ଖବରକାଗଜରେ ବିଜ୍ଞାପନ ଦିଅନ୍ତି ନାହିଁ । କିନ୍ତୁ, ସେଠାରେ ସର୍ବଦା ଭିଡ଼ । ଫଳିତ ଜ୍ୟୋତିଷ ସେପରି । ଦୁଇ-ପାଞ୍ଚଟା ଭବିଷ୍ୟତ ବାଣୀ ସତ ହୋଇଗଲେ ବିନା ବିଜ୍ଞାପନରେ ଭିଡ଼ ଜମେ । **ଫଳିତ ଜ୍ୟୋତିଷ ସପକ୍ଷରେ ଶ୍ରେଷ୍ଠତମ ଯୁକ୍ତି ହେଉଛି ଭବିଷ୍ୟତ ବାଣୀର ସଫଳତା ।** ଫଳିତ ଜ୍ୟୋତିଷିଙ୍କ ଦ୍ୱାରସ୍ଥ ହେବାକୁ ଆଧୁନିକ ବୈଜ୍ଞାନିକ(ଡ଼ାକ୍ତର, ଇଂଜିନିୟର, ଜିଓଲଜିଷ୍ଟ ଇତ୍ୟାଦି)ମାନେ କୁଣ୍ଠା ପ୍ରକାଶ କରୁଥିବା ମୁଁ ତ କାହିଁ ଦେଖୁନାହିଁ ? ଚଢ଼େଇ ଆକାଶରେ ଉଡ଼ୁଛି । ଆମେ ବୃଥାରେ ବୁଦା ବାଡ଼େଇବା ନିଷ୍ପ୍ରୟୋଜନ । **ଆମର ଆବଶ୍ୟକତା ହୋଉଛି not in defence of Astrology, but in vindication of Astrology** ; ଯେପରିକି ଜାନକୀ ବାବୁଙ୍କ ଅବସରଣ ବିଷୟରେ ଡ଼କ୍ଟର ରମଣଙ୍କ ସଫଳ ଭବିଷ୍ୟତ ବାଣୀ । **ଫଳିତ ଜ୍ୟୋତିଷ ଫଳ ଧରୁ ।**

# Rationale of Astrology

**First Print, April, 1993, Second Print, April, 1996, Rs 50/-**

**Dandapani Panda,** Author and Publisher, 95, Madhusudan Nagar, P.O. : Bhubaneswar- 751001, Orissa.

## Book Review

**(1) The Astrological Magazine, Bangalore, January, 1994 :-** Astrology is a science based on mathematics. Its predictive part is very much like medical science developed through research and study. Unfortunately, we in India have not given astrology its due place in our educational institutions. Astrology is wrongly understood as fortune-telling and dismissed as superstition. What this volume does is to present a case for astrology, eradicating in the process wrong notions in the minds of the people, furnish facts and figures relating to its rationale, basis, orgins and its application.

The author quotes extensively from the Vedas and the Bhagavad Gita in an effort to explain the nexus between the cosmos and the individual and concludes that all the scientific data piled up regarding cosmology, in contrast, provides no answers to the questions Vedanta can answer.

How planetary influences can have an effect on people and events on earth are explained with simple similies and illustrations. **It is said that Lord Krishna's son Samba was cured of leprosy in Konark in Orissa.** The author points out this story has a valid rationale behind it as Konark is said to receive the Sun's rays with greater intensity than any other place and the method employed was only heliotherapy.

On the history of Jyotisha, Panda traces it to the Vedic times. The Rig Veda he points out, carries details of the Sun's course, the Moon's path and the duration of the month. The concept of Yuga and Maha Yuga is the central feature of Indian Astrology, points out the author. He holds that the development of astrology was at its best between the 5th and 12th centuries but thereafter, its decline set in. There are short notes on some of our greatest astronomers.

Aryabhatta, Varahamihira, Bhaskarachrya, Brahmagupta and others which are bound to be of great interest and information to all interested in an authentic version of our much distored history. Panda

quotes form a galaxy of thinkers including Dr. B.V. RAMAN, to press the fact of the Indian origins of Astrology and that the Greeks were still, at that point of time, struggling with the basics of knowledge arguing the earth was flat. There is evident in the author's writing a sense of great indignation at the injustice done not only to Astrology but also to Indian history by western scholars. The detailed information on facts and figures furnished in these pages should set at rest all arguments against the Greek origins and the wrong notions of astrology being hammered into our youth by "Secular" educationalists in our country.

Astrology is deeply linked with the theory of rebirth and Karma which is explained with many impressive illustrations and quotations.

The author also tackles some common criticism against astrology refuting each of the charges methodically. The limitaions and scope of astrology are often never understood properly but the author takes great pains in classifying matters on both counts. Remedial measures and how they work, exploitations of the science and why it has come to such a pass make up the rest of the volume.

**A highly informative book, an open-minded persual of it is bound to evoke respect in the reader for the science of Jyotisha.**

**(2) Express Star Teller, Madras, October, 1993 :-** The author, Shri Dandapani Panda, informs us that astrology is not being generally accepted by the "Modern scientific" age : then how come there is growing interest in the subject the world over ? The answer lies in the fact that the modern scientific " age has added myriad problems to mankind which being at loss to comprehend its own predicament finds solution and solace in astrological and allied sciences . Whether astrology has rationale or not is no longer an issue. It is accepted that astrology goes beyond the realm of modern science. The fault lies not with astrology but with the charlatans of Astrology who have begun to cash in on the growing craze.

**The book " Rationale of Astrology" makes for light and easy reading with its interesting and spicy quotations form leading and lesser lights. Some samples :**

"God will not be god if he allowed himslef to be an object of proof by his creatures " - Mahatma Gandhi.

"That many predictions go wrong, proves nothing essesntially against astrology any more than the constant failure of doctors to heal

diseases proves anything essentialluy against medical science - Sri Aurobindo.

" If a dog were born at the same place, on the same date and time as I, could be write books, You tell me no, he would not be able to, but surely he would bark more vociferously and continously and he would also bite more sharply and deeply than other canine - Nirad Chaudhuri.

**(3) Bhavan's Journal, Bombay Dt. 31.8.94 :-** The author, Shri Dandapani Panda, a retired official from the Office of the Accountant General, Orissa, is an ardent votary of astrology. Himslef an astrologer - he was awarded the title "Jyotisha Praveena" by an organisation in Bhubaneswar - he makes a spirited defence of astrology. He examines the ctiticisms against astrology and replies to them point-by-point in a manner that should carry conviction even to sceptics. He quotes profusely the views of eminent men both for and aginst astrology but this one form Sri Aurobindo is clinching.

" It is reasonable to suppose that there are unseeen connections determining human events in the world and future events may, therefore, be predictable, whether it can be done on the lines of astrology or Cheiromancy is a matter of enquiry and one does not get any farther by dismissing the possibility with a summary denial. T he case for astrology is fairly strong ; a case seems to exist for Cheiromancy also". (Sri Aurobindo Birth Centenary Library Edition, Vol.22 Page 227).

After dealing with the astral influences (Planets and stars) on human lives with reference to the puranic and other accounts about the origin of the universe, Shri Panda gives details of the astrological treatises and their authors. He recognies that at the beginning, astrology was the result of intuitive perceptions rather than that of specific, scientific studies. He recognises that mere knowledge of astrology is not enough ; the astrologer needs to have God's grace if his predictions are to come true. Echoing the view of Sri Aurobidno , Shri Panda says that astrologers, like poets, are born, not made. He drives home the point that astrology is a matter of faith and to both the astrologer and the man who seeks his hlep, faith in God is necessary.

**Shri Panda's book (divided into 16 chapters) is vesry informative, packed as it is with his own views and quotations from various astological treaties and authorities on astrological**

**and practising astrologers. It is commendable effort at clearing the cobwebs of rational scepticism on the one hand and blind faith on the other. Astrology has its basis in knowledge, mostly intulive, though and demands willing suspension of disbelief.** There were, still are and certaily will be, astrologers who can make accurate peredictions of events in the lives of individuals and nations. Mankind has a valuable and useful field of knowledege in Indian astrology, Jyotisha Sastra, one of the six limbs of the Veda.

**(4) Mystic India, Culcutta, September , 1995 :-** The **author has tried to remove the misconceptions from the minds of those who read this book and establish a clear idea about astrology in those who believe in it or practice it** . It is explained here as to what this science is and how it is related to "The Theory of Evolution" and the creation and origin of Universe.

It brings forth the fact that signs and planets merely indicate a man's character or fate and become the instruments of our Karma as the vital force that pours upon us form all parts of the Solar System and this physcial Universe. According to this book, astrology is the gift of ancient Sages to us, who realized the application of Cosmic laws to terrestrial phenomenon in general and man in particular. The planets, as repressentatives of God, which give good or bad results to an individual according to the work done.

The author has explained this with the help of a very good exmple, such as the fact that we have a tendency to forget any favour done to us, without asking, we do not thank anybody for good wheather but we do feel discomfort of bad wheather. We also do not recognise the existence of God because we do not feel it necessary even though we can see the bounty of Flora and Fauna and the wonderful universe because we take it for granted as a birthright,the benefits that the planets and stars give to us. The author has to his credit many articles on astrology, religion, politics and social problems which have been published in Oriya and English magazines and newspapers and has received the distinction of "Jyotisha Praveena" from the Samanta Chandra Sekhar Smriti Parishad, Bhubaneswar.

**(5) Astrology - The Soul of All, New Delhi, Vol-4. July-Sept. 95 :-At the outset I must appretiate the hard labour put in by the author in bringing out this book and that too by collecting relevant marterial from the classics and Vedas.**This itself speak of

the deep insight into astrological principles but unfortunately we have few number of astrologers in the modern times to have the patience to go through principles of Vedas. But that will not lose the utility of the book rather it is a great asset for those for whom it is meant.

2. Influence of planets on the human beings apart from the influence on inanimate things is accepted by all and this is what has been emphasised by the author. Shri Panda has tried to trace the astrological principles to Vedas and has also discussed in brief the concept of "Mahayuga". For those who do not believe in astrology and are critics of astrology, the ansswer can be deduced that they donot know astrology.

3. Karma Theory does from the basis of astrology and linking with re-birth is a very difficult propostion. Though some impressive illustrations have been given in the book, yet it has been seen that it is difficult to apply them in t he modern times. Suppose a prticular Lagna is rising at 10.00 degrees in a particular sign, the native had already spent (previous birth) the period covered by 9 degree and 59 minutes but again it becomes doubtful whether the native in previous birth was a king (Rich person) or a slave (poor person) depending on the sign rising i.e. Leo or Capricorn/ Aquirus. Hence the need to have more research on this point. The sign rising at birth, Nakshtra ruling at birth, the planet who is lord of rising sign and the Planets accupying the Lagna etc. all have something to say about the previous birth.

4. It is creditable for a Retired Official like Shri Dandapani Panda to have involved himself with Divine Science and this involvement itself speak of the "Karma" theory - otherwhise he would not have been an astrologer of this calibre. It is true to say that astrology can indeed serve as a useful science if approached properly in a scientific manner. I fully agree with Shri Panda that Astrology / Astronomy need to be studied as a Science so that the desired results may be achieved. Some of the astrologers try to speak out merely on the basis of planets' positioned but they do not take into consideration the degree of the planet. If the Lagna and Lagna Lord has no strength, the native is bound to suffer throughout life physically though he may live depending on the strength of other planets.

5. The book is meant for Astrologers who have deep knwledge of the subject or intend to acquire deep knowledge of the subject . However, I feel that in view of the hard labour put in by Shri Panda, the book had been priced at a nominal price because I know the pangs of labour in writing the book.

**(6) Planets & Forecast, Cuttack, October-1993 :-** Astrology is a useful subject. Neverthless, it is very controversial. An attempt is made in this book to eradicate some of misconceptions about Astrology. This book contains 16 Chapters.

(i) Mystery of creation of the universe. (ii) What is Astrology. (iii) Influence of planets on mankind. (iv) History of Jyotisha. (v) Religion, Astrology and Society.(vi) Karma and Astrology. (vii) Limitations of Astrology. (ix) Benefits of Astrology (x) Astrological remedies. (xi)Misconceptions of Astrology. (xii) The future of Astrology and many other chapaters.

This book deals with the rationale of Astrology. It contains valuable instructions of learned personalities. The spiritual value of Astrology, its Scientific application and methodology of successful predictions are dealt very wisely. Views of Sri Aurobindo, Param Hansa Yogananda and eminent personalities on Astrology are dealt in this book.

**The Author, Sri Dandapani Panda is a learned Astrologer and he offers very good suggestions regarding Remedial part of Astrology.**

The measures to avoid or minimise the bad effects of planets is known as Graha-Shanti, This is done by reciting Mantras,performing Homas, wearing yantras, feeding the poor and giving alms.

It is said that there is no graha- rista for Sanyasi or Yogi. For instance, Adi Shankaracharya wanted to become a Sanyasi. But his mother did not agree. While taking bath he was caught by a crocodile.He cried to his mother and instantly his mother dedicated him to Sanyansa. The crocodile then only disappeared . This is an example to prove that there is no graha-rista for one who leads spiritual life and was intitiated by Guru to a mantra.

**This attempt of Sri Panda, who writes " Today & Tommorrow" for, P & F to spiritualise astrology is the call of the day. He joins hands with the Editor, Plants & Forecast to popularise the slogan :- "The Astrologer must be a Rishi."**

The Author has laso published a book in Oriya"Phalita-Jyotish." The price of the book Rs. 15/- concession is allowed for bulk-purchase.

**(7) Organiser, New Delhi, 5.9.1993 :-** The position of the stars, the ascendant or descendant planet at the time of birth and the strong influences that these terrestrial bodies wield over mortals, has remained a subject of debate for a long time.

The diehard cynics amongst us may raise an indolent eyebrow and prefer to rationalise away our fate - yet there's no denying the fascination that the subject holds for most of us.

In his book - "Rationale Astrology " the author Dandapani Panda has attempted an in-depth explanation of the intricacies and origin of this science, in keeping with the ancient Hindu philosophy. Interspersed with ancient Sanskrit hymns and verses, which are taken from the Vedas, the author has effectively traced the origin and evolution of the universe with the theory of Brahman, also known as the supreme cosmic energy.

A step- by- step, detailed introduction to this science, along with instances and examples, lends credibility to the fact, that intense and dedicated research has enabled the author to convey the mysteries of the universe in a purely scientific way.

The opening chapters establish the relationship between Man and the Cosmos, alongwith the quotations from the text of Arybhatta, one of the greatest astronomers of India who perfected the use of the decimal system and was a noted mathemtician. References from eminent scholars like swami Vivekananda, Swami Dayananda amd Max Mueller have been cited to convey different views and opinions on the subject.

A link is also establlished between religion, astrology and society, as also with the Hindu concept of Karma meaning action or work.

The later chapters also examine the allegations and misconceptions against astrology and the stance that it does not necessarily encourage a person to become fatalistic- on the contrary, it encourages people to perform one's karma which lays down that "engage yourself in work; for action is superior to inaction."

The author has, therfore, systematically examined each segment in detail and made an in -depth study of the subject, paying attention to all the details. He is of the opinion that astrology can indeed serve as a useful science if approached properly in a scientific manner. Verily,

**an extremely laudable effort by the author who is well-versed in his subjecdt. This certainly is a thought-provoking book and the author deserves to be complimented for his incisive and detailed analysis of the subject.**

(8) Ganita Bharati, Indian Society for History of Mathematic, Jhansi, Vol-18, Nos.1-4 (1996) :-

Reviewed by S.S. Lishk, Govt. in-Service Training Centre, Patiala-147001(Punjab).

Astrology is the study of correlation between terrestrial events and celestial phenomena. The word " Jyotisha" in Sanskrit, means both astronomy and astrology as well. According to ancient Indian tradition, Jyotisha was broadly divided into Siddhanta, Samhita and Hora or Jataka. Siddhanta deals with astronomical calculations. Samhita deals with metereology, geology and omen etc. And Hora deals with good or bad influence of the planets and stars on man and the world. Astrology rests on mathematical foundation of astronomical phenomena. According to Maharishi Parashar, a skilled astrologer must be an adept in mathematics so that he may accurately compute the positions of planets etc. Astrology, leaving aside fortune telling, cannot exist without mathemtical astronomy. And as Panekock has rightly observed in his paper entitled as " Astrology and its influence upon the development of astronomy ", Journal of the Royal Astronomical Society of Canada, Vol XXIV, No.125 PP. 159-175, that it was in the process of systematisation of astrology through observation of the celestial phenomena, that astronomy was born. From the antiquitic point of view and for the history of ancient celestial science, astronomy and astrology cannot be seperated form each other. Ancient astronomical knowledge has been garbed in an astrological lore studded with mythological symbolism in its own style.

Dandapani Panda has attempted to comment on astrology form multiple angle, Viz., Astrology in relation to religon, society, karma, fatalism, remedies etc. Misuse and reasons for decline of astrology have also not escaped his attention. Besides, the present book contains a full chapter on history of Jyotisha. The study of the history of Jyotisha begins from the Vedas. The astronomical knowledge was uitlised to ascertain auspicious moments for proper performace of Yajna and other religious functions.

Vedanga Jyotisa, an auxilliary to Vedas, is the oldest systematic treatise on astronomy. Then eighteen Siddhantas have been referred to with a detailed account of Surya Siddhanta. The author has given some accounts of works of scholars like Arybhata-I, Varahamihira, Bhskaracarya-I, Brahmagupta, and Bhaskaracarya-II. A mention is also made baout abundant literature in Sanskrit in Orissa about astronomy and astrology. The first important astronomer of Orissa was Satananda Acharya who was born in 1068 A.D. in Srikhetra (Puri). After making a brief attempt to compare with Ptolemy's contribution and going through the comments of some other scholars. the author claims high credit for ancient Indian scholars regarding Indian origin of Jyptisha. Besides the author has compiled a list of Jyotishis or ancient astronomers since Lagadha (14th century B.C.) to Ramadeva Smruti Tritha (1934) and Shamashastri and their works.

**Dandapani Panda has made a very comprehensive study of astrology form various angles. He has analysed various pros and cons of astrology. The book clearly depicts about astrology- what it is and what it is not. It highlights the "Scientific aspects" of astrology as partitioned from roadside fortune telling. The author has viewed the subject of astrology through the scientific sieve of astronomy right from its origin form the Vedic period. The book is quite indispensable for all antiquarians, especially for scholars of ancient Indian studies.**

The book is finely printed in bold type and also moderately priced.However, it is felt that more scientific tinge could be applied so far as analytical approach as implied herein is concerned. The author could have done still better if he could have gone though some works like that of Acharya Rajnish in the field of astrology. **However, the atempt of Dandapani Panda is quite praiseworthy.**

(୯) ସମାଜ, ତା ୩୦.୫.୯୩ :- ଫଳିତ ଜ୍ୟୋତିଷ ବୈଦିକ ଯୁଗରୁ ଆରମ୍ଭ କରି ଅଦ୍ୟାବଧି ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇଆସୁଛି । ଏହି ଶାସ୍ତ୍ର ପ୍ରତି ସାଧାରଣରେ ଥିବା ସମସ୍ତ ଭ୍ରାନ୍ତ ଧାରଣା ଦୂର କରି ଏହାର ସତ୍ୟତା ପ୍ରତିପାଦନ ଉଦ୍ଦେଶ୍ୟରେ ପୁସ୍ତକଟି ରଚିତ ।

ଫଳିତ ଜ୍ୟୋତିଷ ଶାସ୍ତ୍ରର ଆଧ୍ୟାତ୍ମିକତା ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଥିବା ଏହି ପୁସ୍ତକଟିରେ ପ୍ରାଚୀନ ଭାରତୀୟ ସଂସ୍କୃତି ଓ ଐତିହ୍ୟ ବିଷୟରେ ମଧ୍ୟ ଆଲୋଚନା କରାଯାଇଅଛି । ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଆର୍ଯ୍ୟ ସଂସ୍କୃତି ବିଷୟ

କେତେକ ଭ୍ରମାତ୍ମକ ତଥ୍ୟକୁ ଲେଖକଏଥିରେ ଖଣ୍ଡନ କରିଛନ୍ତି । ଏହି ଶାସ୍ତ୍ର ଅନୁଯାୟୀ ବିଶ୍ୱ ସୃଷ୍ଟିର ରହସ୍ୟ, ମଣିଷ ଉପରେ ଗ୍ରହ, ନକ୍ଷତ୍ର ଇତ୍ୟାଦିଙ୍କ ପ୍ରଭାବ, ଜ୍ୟୋତିଷ ଶାସ୍ତ୍ରର ଇତିହାସ, ଧର୍ମ-ଜ୍ୟୋତିଷ ଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ରର ଉପକାରିତା ଇତ୍ୟାଦି ସମ୍ପର୍କରେ ଏଥିରେ ଆଲୋଚନା କରାଯାଇଛି । ପାଠକ ମହଲରେ ପୁସ୍ତକଟି ଆଦୃତ ହେବ ବୋଲି ଆଶା ।

**(୧୦) ପ୍ରଜାତନ୍ତ୍ର, ତା ୪.୭.୯୩ :-** ଶ୍ରୀ ଦଣ୍ଡପାଣି ପଣ୍ଡାଙ୍କ ଇଂରାଜୀ ଭାଷାରେ ଲିଖିତ ''ରେସନାଲ ଅଫ୍ ଆଷ୍ଟ୍ରୋଲଜି'' **ପୁସ୍ତକ ଫଳିତ ଜ୍ୟୋତିଷର ଆଧାମ୍ନିକତା ଉପରେ ପର୍ଯ୍ୟବସିତ ।**

ଜ୍ୟୋତିଷ ବିଦ୍ୟା ପ୍ରତି ଥିବା ସମସ୍ତ ସନ୍ଦେହ ଓ ଭ୍ରାନ୍ତ ଧାରଣା ଦୂର କରିବା ଏବଂ ସତ୍ୟତା ପ୍ରତିପାଦନ କରିବା ଏହି ପୁସ୍ତକର ଉଦ୍ଦେଶ୍ୟ । ଜ୍ୟୋତିଷ ସହିତ ଭାରତର ପ୍ରାଚୀନ ସଂସ୍କୃତି, ଐତିହ୍ୟ ଓ ପ୍ରତିଷ୍ଠା ବିଷୟରେ ଏଥିରେ ସବିଶେଷ ଆଲୋଚନା ସ୍ଥାନ ପାଇଛି । ବିଶିଷ୍ଟ ବ୍ୟକ୍ତିଙ୍କର ଗ୍ରନ୍ଥ ଓ ଲେଖାର ଉଦ୍ଧୃତାଂଶକୁ ନେଇ ଆଲୋଚନାକୁ ବେଶ୍ ମନୋଜ୍ଞ ତଥା ବୌଦ୍ଧିକ କରିବା ପାଇଁ ଲେଖକ ଉଦ୍ୟମ କରିଛନ୍ତି ।

**(୧୧) ସମ୍ବାଦ, ୧୨.୯.୯୩ :-** ଫଳିତ ଜ୍ୟୋତିଷ ବୈଦିକ ଯୁଗରୁ ଆରମ୍ଭ କରି ଆଜି ସୁଦ୍ଧା ଲୋକଙ୍କ ଉପକାରରେ ଆସୁଛି । ଅଧିକାଂଶ ଲୋକେ ଏହାକୁ ବିଶ୍ୱାସ କରୁଥିବା ବେଳେ କେତେକ ଏହାକୁ ସନ୍ଦେହ କରନ୍ତି ଏବଂ ଅନ୍ୟ କେତେକ ଏହାକୁ ବିରୋଧ କରନ୍ତି । ଜ୍ୟୋତିଷ ପ୍ରତି ଥିବା ସବୁ ଭ୍ରାନ୍ତ ଧାରଣା ଦୂରକରି ଏହାର ସତ୍ୟତା ପ୍ରତିପାଦନ କରିବା ଏହି ପୁସ୍ତକର ଉଦ୍ଦେଶ୍ୟ । ଏଥିରେ ଫଳିତ ଜ୍ୟୋତିଷର ଆଧାମ୍ନିକତା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି ।

ଜ୍ୟୋତିଷ ସାହିତ୍ୟ ଭାରତର ପ୍ରାଚୀନ ସଂସ୍କୃତି, ଐତିହ୍ୟ ଓ ପ୍ରତିଷ୍ଠା ବିଷୟରେ ଏଥିରେ ଆଲୋଚନା କରାଯାଇଛି । ଭାରତ ଅନେକ ବିଷୟରେ ବିଶ୍ୱରେ ପ୍ରଥମ । ଏଠାରେ ପ୍ରଥମେ ମାନବ ସଭ୍ୟତା ପ୍ରକାଶ ପାଇଥିଲା । ଭାରତୀୟମାନେ ସର୍ବପ୍ରଥମେ ଭୂ-ଭ୍ରମଣବାଦ, ମାଧ୍ୟାକର୍ଷଣ ଶକ୍ତି, ଏକ ଠାରୁ ନଅ ଏବଂ ଶୂନ୍ୟ ସଂଖ୍ୟା ଆଦିର ଆବିଷ୍କାର କରିଥିଲେ । ଜ୍ୟୋତିର୍ବିଜ୍ଞାନ, ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ଯୋଗ ଇତ୍ୟାଦି ଦିଗରେ ଭାରତୀୟମାନେ ପ୍ରଥମେ ଉଲ୍ଲେଖନୀୟ ପ୍ରଗତି ହାସଲ କରିଥିଲେ । ଆଜି ଭାରତର ପତନର କାରଣ ଏବଂ ତାର ହୃତ ଗୌରବ ଉଦ୍ଧାର ପାଇଁ କ'ଣ କରିବା ଉଚିତ ଏହି ବିଷୟ ମଧ୍ୟ ଆଲୋଚନା କରାଯାଇଛି ।

**ପାଶ୍ଚାତ୍ୟ ପଣ୍ଡିତମାନେ ଆର୍ଯ୍ୟମାନଙ୍କୁ ଭାରତ ବାହାରୁ ଆସିଥିବା କଥା ଏବଂ ସିନ୍ଧୁ ସଭ୍ୟତାକୁ ଅନାର୍ଯ୍ୟ ସଭ୍ୟତା ବୋଲି ଯେଉଁ ମିଥ୍ୟା ପ୍ରଚାର କରୁଛନ୍ତି ତାହା ଖଣ୍ଡନ କରାଯାଇଛି ।**

ଏଥିରେ ଯେଉଁସବୁ ବିଷୟ ଆଲୋଚନା କରାଯାଇଛି ତାହା ସାବ୍ୟସ୍ତ କରିବା ବାଇଁ ଅନେକ ବିଶିଷ୍ଟ ବ୍ୟକ୍ତିଙ୍କର ଗ୍ରନ୍ଥ ଓ ଲେଖାରୁ ଅଂଶ ଉଦ୍ଧାର କରାଯାଇଛି । ପୁସ୍ତକଟି ସର୍ବସାଧାରଣଙ୍କର ଆଦୃତ ହେବ ବୋଲି ଆଶା ।

**(୧୨) ଭାଗ୍ୟଲିପି, ଡ଼ିସେମ୍ବର, ୧୯୯୩ :-** ଫଳିତ ଜ୍ୟୋତିଷ ବୈଦିକ ଯୁଗରୁ ଆରମ୍ଭ କରି ଆଜି ସୁଦ୍ଧା ଲୋକଙ୍କ ଉପକାରରେ ଆସୁଛି । ଅଧିକାଂଶ ଲୋକେ ଏହାକୁ ବିଶ୍ୱାସ କରୁଥିବାବେଳେ କେତେକ ଏହାକୁ ସନ୍ଦେହ କରନ୍ତି ଏବଂ ଅନ୍ୟ କେତେକ ଏହାକୁ ବିରୋଧ କରନ୍ତି । ଜ୍ୟୋତିଷ ପ୍ରତି ଥିବା ସବୁ ଭ୍ରାନ୍ତ ଧାରଣା ଦୂରକରି ଏହାର ସତ୍ୟତା ପ୍ରତିପାଦନ କରିବା ଏହି ପୁସ୍ତକର ଉଦ୍ଦେଶ୍ୟ । ଏଥିରେ **ଫଳିତ ଜ୍ୟୋତିଷର ଆଧ୍ୟାତ୍ମିକତା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି ।**

ଜ୍ୟୋତିଷ ସହିତ ଭାରତର ପ୍ରାଚୀନ ସଂସ୍କୃତି, ଐତିହ୍ୟ ଓ ପ୍ରତିଷ୍ଠା ବିଷୟରେ ଏଥିରେ ଆଲୋଚନା କରାଯାଇଛି । ଭାରତ ଅନେକ ବିଷୟରେ ବିଶ୍ୱରେ ପ୍ରଥମ । ଏଠାରେ ପ୍ରଥମେ ମାନବ ସଭ୍ୟତା ପ୍ରକାଶ ପାଇଥିଲା । ଭାରତୀୟମାନେ ସର୍ବପ୍ରଥମେ ଭୂ-ଭ୍ରମଣବାଦ, ମାଧ୍ୟାକର୍ଷଣ ଶକ୍ତି, ଏକ ଠାରୁ ନଅ ଏବଂ ଶୂନ୍ୟ ସଂଖ୍ୟା ଆଦିର ଆବିଷ୍କାର କରିଥିଲେ । ଜ୍ୟୋତିର୍ବିଜ୍ଞାନ, ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ଯୋଗ ଇତ୍ୟାଦି ଦିଗରେ ଭାରତୀୟମାନେ ପ୍ରଥମେ ଉଲ୍ଲେଖନୀୟ ପ୍ରଗତି ହାସଲ କରିଥିଲେ । ଆଜି ଭାରତର ପତନର କାରଣ ଏବଂ ତାର ହୃତ ଗୌରବ ଉଦ୍ଧାର ପାଇଁ କ'ଣ କରିବା ଉଚିତ ଏହି ବିଷୟ ମଧ୍ୟ ଆଲୋଚନା କରାଯାଇଛି ।

**ପାଶ୍ଚାତ୍ୟ ପଣ୍ଡିତମାନେ ଆର୍ଯ୍ୟମାନଙ୍କୁ ଭାରତ ବାହାରୁ ଆସିଥିବା କଥା ଏବଂ ସିନ୍ଧୁ ସଭ୍ୟତାକୁ ଅନାର୍ଯ୍ୟ ସଭ୍ୟତା ବୋଲି ଯେଉଁ ମିଥ୍ୟା ପ୍ରଚାର କରୁଛନ୍ତି ତାହା ଖଣ୍ଡନ କରାଯାଇଛି ।**

ଏଥିରେ ଯେଉଁସବୁ ବିଷୟ ଆଲୋଚନା କରାଯାଇଛି ତାହା ସାବ୍ୟସ୍ତ କରିବା ପାଇଁ ଅନେକ ବିଶିଷ୍ଟ ବ୍ୟକ୍ତିଙ୍କର ଗ୍ରନ୍ଥ ଓ ଲେଖାରୁ ଅଂଶ ଉଦ୍ଧାର କରାଯାଇଛି । ପୁସ୍ତକଟି ସର୍ବସାଧାରଣଙ୍କର ଆଦୃତ ହେବ ବୋଲି ଆଶା ।

(୧୩) ନିୟତି, ନଭେମ୍ବର, ୧୯୯୩ :- ସମୀକ୍ଷିତ ଗ୍ରନ୍ଥର ପ୍ରଥମେ ଦିଆଯାଇଛି ସୃଷ୍ଟିରହସ୍ୟ । ଆସ୍ତିକ ଭାରତୀୟ ମନିଷୀମାନେ ବିଶ୍ୱକୁ କହନ୍ତି ବ୍ରହ୍ମାଣ୍ଡ ( ବ୍ରହ୍ମ + ଅଣ୍ଡ) । ବିଶ୍ୱର ଅଣୁପରମାଣୁ ମଧ୍ୟରେ ବିଚିତ୍ର ଶୃଙ୍ଖଳାକୁ ଲକ୍ଷ୍ୟ କରି ଋଷିମାନେ ସର୍ବତ୍ର ଐଶ୍ୱରିକ ''ସତ୍ତା'' ଅନୁଭବ କରୁଥିଲେ । ଏହି ''ସତ୍ତା'' ଯୋଗୁ ବସ୍ତୁ ବସ୍ତୁ ମଧ୍ୟରେ ଆତ୍ମୀୟତା ରହିଚି । ସୁତରାଂ, ପ୍ରତ୍ୟେକ ପାର୍ଥିବ ଜୀବ ଓ ବସ୍ତୁ ଅନ୍ୟ ସମସ୍ତ ପାର୍ଥିବ ବସ୍ତୁ (ଗ୍ରହ-ନକ୍ଷତ୍ର) ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । ଆର୍ଯ୍ୟ ମନିଷୀମାନେ ଏହି ପ୍ରଭାବ-ପାରିମାପ କରିବାରେ ଯେଉଁ ସଫଳତା ଲାଭ କରିଥିଲେ ; ତାହା ହେଉଚି ଫଳିତ ଜ୍ୟୋତିଷ ।

ଫଳିତ ଜ୍ୟୋତିଷରେ କର୍ମବାଦ ଓ ଜନ୍ମାନ୍ତରବାଦ ସ୍ୱୀକୃତ । ପାଶ୍ଚାତ୍ୟ ବୈଜ୍ଞାନିକମାନେ ଏହି ଦୁଇଟି ଉପପତ୍ତିକୁ ସ୍ୱୀକାର କରନ୍ତି ନାହିଁ । ସେମାନେ ଆକସ୍ମିକବାଦ (Accidentalism) କୁ ସ୍ୱୀକାର କରନ୍ତି । ସେମାନଙ୍କ ମତରେ, ବିଶ୍ୱ ସୃଷ୍ଟି ଏକ ''ଆକସ୍ମିକ'' ବିସ୍ଫୋରଣ(BIG BANG) ଯୋଗୁ ଘଟିଛି । ପାଣି ଯେପରି ଆପେ ଆପେ ତଳକୁ ଗଡ଼ିଯାଏ, କି 'ଆପଲ' ଯେମିତି ଆପେ ଆପେ ଝଡ଼େ ; ସୃଷ୍ଟିର ସମଗ୍ର ଶୃଙ୍ଖଳା ସେମିତି ଆପେ ଆପେ ଘଟିଛି । ଏହି ଶୃଙ୍ଖଳାଗୁଡ଼ିକର ଅନୁସନ୍ଧାନ ଓ ଉପଯୋଗ ହିଁ ବିଜ୍ଞାନର ଲକ୍ଷ୍ୟ । ବିଜ୍ଞାନରେ ଇଶ୍ୱରଙ୍କୁ ସ୍ୱୀକାର କରାଯାଏ ନାହିଁ ।

ଆକାଶ-ପର୍ଯ୍ୟବେକ୍ଷଣ କରି ଆସ୍ତିକ ମୁନି-ଋଷି-ମନିଷୀମାନେ ମନୁଷ୍ୟ ଜୀବନ ଉପରେ ଗ୍ରହ-ନକ୍ଷତ୍ରଙ୍କ ପ୍ରଭାବ ଯେପରି ନିରୂପଣ କରି ଯାଇଛନ୍ତି, ଏହାର ନିରାକରଣ ପାଇଁ ବ୍ୟବସ୍ଥା ବି ବତାଇ ଦେଇ ଯାଇଛନ୍ତି । ଏହାକୁ ହିଁ ଆମେ ଆକାଶର ''ଶାନ୍ତିପୂର୍ଣ୍ଣ ପର୍ଯ୍ୟବେକ୍ଷଣ '' ବୋଲି କହିଆସୁଛୁ । ପାଶ୍ଚାତ୍ୟ ବୈଜ୍ଞାନିକମାନେ ମହାକାଶ-ପର୍ଯ୍ୟବେକ୍ଷଣ କରି ଗ୍ରହାନ୍ତରରେ ଉପନିବେଶ-ସ୍ଥାପନ ଓ Star war ଚଳାଇ ପୃଥିବୀ-ଅଧିକାର କରିବାକୁ ଚେଷ୍ଟା ଚଳାଇଛନ୍ତି । ଦିନ ଶୀଘ୍ର ଆସୁଚି, ଯେତେବେଳେ ମହାକାଶ ବି ପ୍ରଦୂଷିତ ହୋଇଯିବ; ଓଯୋନ- ସ୍ତରରେ ଫାଙ୍କ ବଢ଼ିବ ; ବିଶ୍ୱ-ବସୁନ୍ଧରା ବିଜ୍ଞାନର ଗୌରବ ଘୋଷଣା କରିବାକୁ ଶ୍ମଶାନରେ ପରିଣତ ହେବ । ଅବଶ୍ୟ ଏହା ଇଶ୍ୱରଙ୍କ ମହିମାମୟ ବିଧାନ ଯୋଗୁ ଘଟିବ ନାହିଁ ; କାରଣ ଯୁଗାନ୍ତ ପାଇଁ ବହୁ ସହସ୍ର ବର୍ଷ ବାକୀଅଛି ।

ସମୀକ୍ଷିତ ଗ୍ରନ୍ଥରେ ଲେଖକ ଯେଉଁ ମହାନ୍ ତତ୍ତ୍ୱଟି ଫୁଟାଇବାକୁ ଚେଷ୍ଟା କରିଛନ୍ତି ଓ ସଫଳ ବି ହୋଇଛନ୍ତି ; ତାହା ହେଉଚି ଯେ ଭାରତୀୟ ଜ୍ୟୋତିଷ କେବଳ ଜ୍ୟୋତିଷ ନୁହେଁ, ଏହା ସମଗ୍ର ବୈଦିକ ସାଧନା ଓ ସଂସ୍କୃତିର ଦିବ୍ୟଚକ୍ଷୁ ।ଏହି ଗ୍ରନ୍ଥଟି ଓଡ଼ିଶା ବାହାରେ ଓ ଭିତରେ ନିଶ୍ଚୟ ଆଦୃତ ହେବ ଓ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଧିକାର କରିବ ।

# ଓଡ଼ିଶାର କୃତୀସନ୍ତାନଙ୍କ ଜାତକ ଓ ଜୀବନୀ

(୧ମ ଭାଗ)

ପ୍ରଥମ ପ୍ରକାଶ, ତା ୧୩.୯.୧୯୯୯, ପୃଷ୍ଠା-୪+ ୩୬୮=୩୭୮

ଲେଖକ ଓ ପ୍ରକାଶକ-ଶ୍ରୀ ଦଣ୍ଡପାଣି ପଣ୍ଡା, ମୂଲ୍ୟ ଟ ୮୦ଙ୍କା ।

**(୧) ପ୍ରଜାତନ୍ତ୍ର, ତା ୩.୧୨.୧୯୯୯ :-** 'ମହାପୁରୁଷ ଜଗନ୍ନାଥ ଦାସ', 'କବିସମ୍ରାଟ ଉପେନ୍ଦ୍ରଭଞ୍ଜ', 'ଜୟୀ ରାଜଗୁରୁ', 'ସନ୍ଥକବି ଭୀମଭୋଇ', ଡକ୍ଟର ହରେକୃଷ୍ଣ ମହତାବ, ସଚ୍ଚିଦାନନ୍ଦ ରାଉତରାୟ, ବିଜୁ ପଟ୍ଟନାୟକ, ସୁରେନ୍ଦ୍ର ମାହାନ୍ତି, ନିମାଇଁ ଚରଣ ହରିଚନ୍ଦନ ଆଦି ସାହିତ୍ୟ, ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ ନିଜସ୍ୱ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିବା ଶହେଜଣ କୃତବିଦ୍ ବ୍ୟକ୍ତିଙ୍କ ଜାତକ ଓ ଜୀବନୀକୁ ନେଇ ପ୍ରକାଶ ପାଇଛି 'ଓଡ଼ିଶାର କୃତିସନ୍ତାନଙ୍କ ଜାତକ ଓ ଜୀବନୀ' ପୁସ୍ତକ । ଦଣ୍ଡପାଣି ପଣ୍ଡାଙ୍କ ଏହି ସଂଗ୍ରହଣୀୟ ପୁସ୍ତକରେ ଉତ୍କଳମାତାର ଯଶସ୍ୱୀ ସନ୍ତାନଙ୍କ ଜନ୍ମ, ରାଶିର ବିଚାର, ରାଶି ବିଚାର ଅନୁଯାୟୀ ବ୍ୟକ୍ତି ନିଜର କର୍ମକ୍ଷେତ୍ରରେ ଅର୍ଜନ କରିଥିବା ସଫଳତା ଆଦି ନିଜ ଜୀବନର ବିଭିନ୍ନ ଦିଗକୁ ଜ୍ୟୋତିର୍ବିଦ୍ୟା ଦୃଷ୍ଟିକୋଣରୁ ପ୍ରକାଶ କରିଛନ୍ତି ଲେଖକ । 'ଓଡ଼ିଶାର ପରିସ୍ଥିତି, ଓଡ଼ିଶାରେ ମହିମାଧର୍ମ, ଓଡ଼ିଶାର ଇତିହାସ ଲେଖକ ଆଦି ଲେଖା ଏହି ପୁସ୍ତକର ଶେଷ ଭାଗରେ ସ୍ଥାନ ପାଇଛି । ପୁସ୍ତକଟି ବେଶ୍ ତଥ୍ୟପୂର୍ଣ୍ଣ ।

**(୨) ସମାଜ, ତା ୪.୧୨.୧୯୯୯;-** ବିଶିଷ୍ଟ ଜ୍ୟୋତିର୍ବିଜ୍ଞାନୀ ଦଣ୍ଡପାଣି ପଣ୍ଡା ଓଡ଼ିଶାର ଶହେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସଂକ୍ଷିପ୍ତ ଜୀବନୀ ସହ ସେମାନଙ୍କ ଜାତକ ବିଶ୍ଳେଷଣ ଏହି ପୁସ୍ତକରେ କରିଛନ୍ତି । ଜାତକ ଗଣନାରୁ ଏହି ମହାପୁରୁଷମାନଙ୍କ ଭବିଷ୍ୟତର ଜୀବନୀ କିଭଳି ଜଣାପଡ଼ିଛି ତାର ବିଶ୍ଳେଷଣ ସେ କରିଛନ୍ତି । ପ୍ରଥମ ଥର ପାଇଁ ଏଭଳି ଏକ ପୁସ୍ତକ ବହୁ ଗବେଷଣା ଓ ପରିଶ୍ରମ କରି ଲେଖିଛନ୍ତି । ଏଥିରେ ମହାପୁରୁଷ ଜଗନ୍ନାଥ ଦାସ, କବି ସମ୍ରାଟ ଉପେନ୍ଦ୍ରଭଞ୍ଜ,ଜୟୀ ରାଜଗୁରୁ, କବିସୂର୍ଯ୍ୟ ବଳଦେବ ରଥଙ୍କ ଠାରୁ ଆରମ୍ଭ କରି ପଲ୍ଲୀକବି ନନ୍ଦକିଶୋର ବଳ, ଡକ୍ଟର ରାଧାନାଥ ରଥ, ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ପ୍ରମୁଖଙ୍କ ଜାତକ ଗଣନା ସ୍ଥାନ ପାଇଛି । ଏହା ବ୍ୟତୀତ ଓଡ଼ିଶା ପ୍ରଦେଶ ଗଠନ, ବିଭିନ୍ନ ଧର୍ମ ବିଷୟରେ ସ୍ଥାନ ପାଇଛି । ପୁସ୍ତକଟି ସାଧାରଣରେ ଆଦୃତ ହେବା ଆଶା କରାଯାଏ ।

**(୩) ସମ୍ବାଦ, ତା ୧୨.୧୨.୯୯ :-** ଜାତକ ଅଧ୍ୟୟନ ଏକ ବିଜ୍ଞାନ ସମ୍ମତ ବିଦ୍ୟା । ପୁଣି, ଜାତକ ମାଧ୍ୟମରେ ଜୀବନୀ ଅଧ୍ୟୟନ ଏକ ଦୂରୁହ କଳା । ଏ ଦକ୍ଷତା ହାସଲ କରିବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ । ତେବେ ଜ୍ୟୋତିର୍ବିଦ୍ ଦଣ୍ଡପାଣି ପଣ୍ଡା ଉତ୍କଳର କୃତୀ ସନ୍ତାନମାନଙ୍କର ଜାତକ ସବୁ ସଂଗ୍ରହ କରି ତା'ରି ମାଧ୍ୟମରେ ସେମାନଙ୍କର ଜୀବନୀ ବିଶ୍ଳେଷଣ କରିବାରେ ଯେଉଁ ଉଦ୍ୟମ କରିଛନ୍ତି, ତାହା ସ୍ୱାଗତଯୋଗ୍ୟ । ପ୍ରତିଭାବାନ ବ୍ୟକ୍ତିଙ୍କର ଜାତକରେ କେଉଁ ଧରଣର ଅନୁକୂଳ ଗ୍ରହାବସ୍ଥାନ ଯୋଗୁ ସେମାନେ କୃତିତ୍ୱ ହାସଲ କରିପାରିଲେ, ତାହାଆଲୋଚନା କରି ଶ୍ରୀ ପଣ୍ଡା ଜ୍ୟୋତିଷ ଭଳି ଏକ ବୈଦିକ ପ୍ରଜ୍ଞା ପ୍ରତି ଆସ୍ଥା ଓ ଆଗ୍ରହ ବଢ଼ାଇ ପାରିଛନ୍ତି । ମହାପୁରୁଷ ଜଗନ୍ନାଥ ଦାସ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଠାରୁ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ହେମାନନ୍ଦ ବିଶ୍ୱାଳଙ୍କ ପର୍ଯ୍ୟନ୍ତ ଶହେ ଜଣ କୃତୀ ସନ୍ତାନଙ୍କର ଜାତକ ଓ ଜୀବନୀ ପର୍ଯ୍ୟାଲୋଚନା ମାଧ୍ୟମରେ ସେ ଓଡ଼ିଶାର ଇତିହାସ , ସଂସ୍କୃତି, ଧର୍ମ,ସାହିତ୍ୟ, କଳା ଓ ରାଜନୀତି ବିଷୟରେ ସମ୍ୟକ ସୂଚନା ଦେଇଛନ୍ତି । ୩୬୭ ପୃଷ୍ଠା ବିଶିଷ୍ଟ ଏଭଳି ଏକ ପୁସ୍ତକ ରଚନା କରି ପୁଣି ନିଜେ ଛପାଇବା କମ୍ ବଡ଼ ଦୁଃସାହସ ନୁହେଁ । ପୁସ୍ତକଟି ଜାତକପ୍ରେମୀ ପାଠକ ମହଲରେ ଆଦୃତ ହେବ ବୋଲି ଆଶା କରାଯାଏ ।

**(୪) ସପ୍ତାହିକ, ସମୟ, ୨୬.୧୨.୧୯୯୯ :-** ଓଡ଼ିଶାର କୃତୀ ସନ୍ତାନମାନଙ୍କ ଉପରେ ଜୀବନୀ ଲେଖାର ଏକ ପ୍ରଶସ୍ତ କ୍ଷେତ୍ର ରହିଛି । ଏଯାବତ୍ ମାତ୍ର କେଇଖଣ୍ଡି ଆତ୍ମଜୀବନୀ ଓ ପୂର୍ଣ୍ଣାଙ୍ଗ ଜୀବନୀ ପୁସ୍ତକ ବ୍ୟତୀତ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ପର୍କରେ ଆଦୌ କିଛି ପ୍ରାମାଣିକ ପୁସ୍ତକ ଲେଖାଯାଇ ନାହିଁ । ତେଣୁ ସେପରି ସ୍ଥଳେ ଓଡ଼ିଶାର ଜନଜୀବନ ସହ ରାଜନୀତି, ଅର୍ଥନୀତି, ସମାଜନୀତି ଅଥବା ଅନ୍ୟାନ୍ୟ କ୍ଷେତ୍ରରେ ଯେଉଁମାନଙ୍କର ଅବଦାନକୁ ନେଇ ଏ ଜାତି ଗର୍ବିତ ସେମାନଙ୍କ ଜୀବନାଦର୍ଶକୁ ସଂଗ୍ରହ କରି ରଖିବା ପ୍ରତ୍ୟେକ ଓଡ଼ିଆର ପ୍ରଧାନ କର୍ତ୍ତବ୍ୟ । ଏହା ଯେ କେବଳ ସେଭଳି ପ୍ରତିଭାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ଓ ପୂଜ୍ୟପୂଜାର ପ୍ରକୃଷ୍ଟ ପ୍ରମାଣ ତାହା ନୁହେଁ, ବରଂ ଏପରି ଜୀବନୀ ମାଧମରେ ଓଡ଼ିଶାର ତତ୍କାଳୀନ ଜନଜୀବନକୁ ସଠିକ୍ ଭାବେ ବିବେଚନା କରିବାର ଅନ୍ୟତମ ସୂତ୍ର । ପ୍ରତିଭାର ସମ୍ମାନ ଦେଶ ଓ ଜାତିକୁ ସମୃଦ୍ଧ କରେ । ଏହା ସେ ଜାତିର ଭବିଷ୍ୟତ ନିର୍ଣ୍ଣୟରେ ମଧ ସହାୟକ ହୁଏ । ଏଥିରେ ବ୍ୟତିକ୍ରମ ଘଟିଲେ ସେ ରାଷ୍ଟ୍ର ଓ ସେପରି ସମାଜ ପ୍ରଗତିଶୀଳ ଓ ଉନ୍ନତ ହୋଇପାରେ ନାହିଁ । କାରଣ ପ୍ରତ୍ୟେକ ବ୍ୟକ୍ତିର ଜୀବନ ଏକ ନିର୍ଦ୍ଦିଷ୍ଟ ଓ ସ୍ୱତନ୍ତ୍ର ଆଦର୍ଶ ଓ ଦର୍ଶନ ଉପରେ ଆଧାରିତ । ସେଥିରୁ ଉତ୍ତରଦାୟାଦମାନଙ୍କର ଯଥେଷ୍ଟ କିଛି ଶିକ୍ଷାଲାଭ କରିବାର ଅଛି । ପୁଣି ଜୀବନୀ ରଚନା କରିବାର ଅର୍ଥ ନୁହେଁ, କେବଳ

ଗୁଣକୀର୍ତ୍ତନ କରିବା । ବରଂ ନିରପେକ୍ଷ ଭାବେ ସମୟାନ୍ତରେ ସମାଲୋଚନା କରିବା ମଧ୍ୟ ଜୀବନୀକାରଙ୍କ କର୍ତ୍ତବ୍ୟ ।

ବିଂଶ ଶତାବ୍ଦୀର ଶେଷ ପାଦରେ ଓଡ଼ିଶାର ଏଇଭଳି ୧୦୦ଜଣ ବିଶିଷ୍ଟ ବ୍ୟକ୍ତିତ୍ୱଙ୍କ ଜୀବନୀ ଓ ଜାତକକୁ ତର୍ଜମା କରି ଏହାକୁ ଖଣ୍ଡିଏ ପୁସ୍ତକ ମଧ୍ୟରେ ସଫଳତାର ସହ ପ୍ରକାଶ କରିଥିବାରୁ ଲେଖକ ଶ୍ରୀଯୁକ୍ତ ପଣ୍ଡା ବାସ୍ତବିକ ପ୍ରଶଂସାର୍ହ । ଶ୍ରୀଯୁକ୍ତ ପଣ୍ଡା ମୂଳତଃ ଜଣେ ଜ୍ୟୋତିର୍ବିଦ୍ ପଣ୍ଡିତ, ପ୍ରତ୍ୟେକ ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ ସମ୍ପର୍କରେ ଉଲ୍ଲେଖ କରିବା ପୂର୍ବରୁ ସେମାନଙ୍କର ଜନ୍ମକୁଣ୍ଡଳୀକୁ ଜ୍ୟୋତିଷ ଶାସ୍ତ୍ର ଦୃଷ୍ଟିକୋଣରୁ ବିଚାର କରିଛନ୍ତି । ବିଜ୍ଞାନ ଯୁଗରେ ସୁଦ୍ଧା ଏପର୍ଯ୍ୟନ୍ତ ଆମମାନଙ୍କର ବିଶ୍ୱାସ ଯେ ଜଣେ ବ୍ୟକ୍ତିର ଭାଗ୍ୟ ତା'ର କର, କୋଷ୍ଠି, କପାଳ ଦ୍ୱାରା ପୂର୍ବ ନିର୍ଦ୍ଧାରିତ । ସେହି ଅନୁସାରେ ସେ ଜୀବନରେ ସୁଖ, ସମୃଦ୍ଧି ଓ ସମ୍ମାନର ଅଧିକାରୀ ହୋଇଥାଏ । ତେଣୁ ଏହି ପୁସ୍ତକରେ ଅଧିକାଂଶ ବିଶିଷ୍ଟ ବ୍ୟକ୍ତିଙ୍କ କ୍ଷେତ୍ରରେ ଜୀବନ ଓ ଜାତକ ମଧ୍ୟରେ ଥିବା ଅପୂର୍ବ ଓ ଅଦ୍ଭୁତ ସମନ୍ୱୟକୁ ଲେଖକ ସରଳ ଭାଷାରେ ପ୍ରମାଣ କରିଛନ୍ତି ।

ଯେଉଁ ଏକ ଶହଜଣ ବ୍ୟକ୍ତିତ୍ୱକୁ ଲେଖକ ତାଙ୍କର ଏହି ପୁସ୍ତକରେ ସାମିଲ କରିଛନ୍ତି ସେମାନଙ୍କ ମଧ୍ୟରେ ଅଛନ୍ତି ବହୁ ମହାପୁରୁଷ, ସାଧୁ, ସନ୍ଥ, ପଣ୍ଡିତ, ଶିକ୍ଷାବିତ୍,ରାଜା, ମହାରାଜା, କବି, ଲେଖକ, ସମ୍ପାଦକ, ଜ୍ୟୋତିର୍ବିଦ୍, ସ୍ୱାଧୀନତା ସଂଗ୍ରାମୀ, ରାଷ୍ଟ୍ରପତି, ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ଶାସକ, ପ୍ରଶାସକ, ସାଂସଦ, ବିଧାୟକ, ଚିକିତ୍ସକ, ଆଇନଜ୍ଞ ଓ ଅନ୍ୟାନ୍ୟ କ୍ଷେତ୍ରରେ ଓଡ଼ିଶା ତଥା ସର୍ବଭାରତୀୟ ସ୍ତରରେ ସୁନାମ ଅର୍ଜନ କରିଥିବା ବ୍ୟକ୍ତି । ସେମାନଙ୍କ ନାମ ଏଠାରେ ଉଲ୍ଲେଖ କରିବା ସମ୍ଭବ ନହେଲେ ସୁଦ୍ଧା ଭାଗବତକାର ଜଗନ୍ନାଥଦାସଙ୍କ ଠାରୁ ଓଡ଼ିଶାର ବିର୍ତ୍ତମାନର ମୁଖ୍ୟମନ୍ତ୍ରୀ ହେମାନନ୍ଦ ବିଶ୍ୱାଳଙ୍କ ପର୍ଯ୍ୟନ୍ତ ସଭିଏଁ ସାମିଲ୍ । ସେମାନଙ୍କର ଜାତକକୁ ତର୍ଜମା କରି ଜାତକାନୁସାରେ ସେହିସବୁ ବ୍ୟକ୍ତିମାନଙ୍କ ଉପରେ ଗ୍ରହ, ଦଶାମାନଙ୍କର ପ୍ରଭାବ ଓ ଏହାର ପ୍ରମାଣ କରାଯାଇଛି । ଅପର ପକ୍ଷରେ ସେହିସବୁ ବ୍ୟକ୍ତିତ୍ୱଙ୍କ ଜୀବନୀ ସମ୍ପର୍କରେ ସମ୍ୟକ୍ ସୂଚନା ଦିଆଯାଇଛି । ସୂଚନା ପରିବର୍ତ୍ତେ ଯଦି ଲେଖକ ପ୍ରତ୍ୟେକ ବ୍ୟକ୍ତିଙ୍କ ଜୀବନୀ ସମ୍ପର୍କରେ ଅଧିକ ତଥ୍ୟ (ଅଧିକ କିଛି ପୃଷ୍ଠା) ପ୍ରଦାନ କରିପାରିଥାନ୍ତେ, ତେବେ ଏହା ଆହୁରି ସ୍ୱୟଂସମ୍ପୂର୍ଣ୍ଣ ହୋଇପାରିଥାନ୍ତା । ଯେଉଁ ବିଶିଷ୍ଟ ବ୍ୟକ୍ତିମାନଙ୍କ ଫଟୋଚିତ୍ର ଉପଲବ୍ଧ ତାହା ଦିଆଯାଇପାରିଥିଲେ ସଂକଳନଟି ଆହୁରି ଆକର୍ଷଣୀୟ ହୋଇପାରିଥାନ୍ତା । ତେବେ ଏହି ଦୁଇଟି ବିଷୟରେ ଅଭାବ ମଧ୍ୟ ପୁସ୍ତକଟିରେ ଉପଲବ୍ଧ ହୁଏ ନାହିଁ ।

କେବଳ ଯେ ଏଥିରେ ଓଡ଼ିଶାରକୃତୀ ସନ୍ତାନମାନଙ୍କ ଜୀବନୀ ଓ ଜାତକ ଆଲୋଚନା କରାଯାଇଛି ତାହା ନୁହେଁ., ଓଡ଼ିଶାର ବିଭିନ୍ନ ଘଟଣାର ବିକାଶ ଧାରା, ଯଥା ଜ୍ୟୋତିର୍ବିଜ୍ଞାନ, ସମ୍ବାଦପତ୍ର, ଆଧୁନିକ ଶିକ୍ଷା, ମହିମା ଧର୍ମ, ସଂସ୍କୃତି ଶିକ୍ଷା, ଆୟୁର୍ବେଦ, ଓଡ଼ିଶା ପ୍ରଦେଶ ଗଠନ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ସମ୍ବଲପୁର,ଗଞ୍ଜାମ ଆଦି କ୍ଷେତ୍ରମାନଙ୍କ ସ୍ୱତନ୍ତ୍ର ଭୂମିକା, ଆର୍ଯ୍ୟ ସମାଜ, ବୌଦ୍ଧ ଧର୍ମ, ଜଗନ୍ନାଥ ଧର୍ମ, ସଙ୍ଗୀତ କଳା, ଗଡ଼ଜାତ ରାଜ୍ୟ ସମୂହଙ୍କ ବିକାଶ ଓ ବିଭିନ୍ନ ସରକାରୀ ଅନୁଷ୍ଠାନ ଓ ପ୍ରତିଷ୍ଠା ଆଦିଙ୍କ ସମ୍ପର୍କରେ ମଧ୍ୟ ଲେଖକ ସଂକ୍ଷେପରେ ସୂଚନା ପ୍ରଦାନ କରିଛନ୍ତି । ଏକାକୀ ଏତେଗୁଡ଼ିଏ ତଥ୍ୟ ସଂଗ୍ରହ ଓ ସେଗୁଡ଼ିକ ସୁସଂଗଠିତ ଭାବେ ଏକତ୍ରିତ କରି ସୁଦୃଶ୍ୟ ଭାବେ ପୁସ୍ତକାକାରରେ ପ୍ରକାଶ କରିପାରିଥିବାରୁ ଲେଖକ ଶ୍ରୀ ପଣ୍ଡା ଅବଶ୍ୟ ଧନ୍ୟବାଦାର୍ହ । **ଅନ୍ୟ ଭାଷାରେ କହିବାକୁ ଗଲେ ଓଡ଼ିଶା ସମ୍ବନ୍ଧରେ ଏହା ନିଶ୍ଚିତ ଭାବେ ସଂଗ୍ରହଣୀୟ ଏକ ସଂକ୍ଷିପ୍ତ ଜ୍ଞାନକୋଷ ।**

**(୫) ଅନୁପମ ଭାରତ,** ତା ୧୧.୬.୨୦୦୦ :- କୃତୀ ସନ୍ତାନଙ୍କ ସ୍ମୃତି ସମ୍ବଳିତ ଦୁଇଟି ସାର୍ଥକ କୃତି :-

ଆମର ନୈତିକତା, ତ୍ୟାଗ ଓ ସେବା ମନୋବୃତ୍ତି ଏବଂ ପ୍ରତିଭାପୂଜା ପ୍ରବୃତ୍ତି କ୍ରମଶଃ ଅବଲୁପ୍ତ ହେବାକୁ ଯାଉଥିବା ବେଳେ ଓଡ଼ିଶାର ସାମାଜିକ ଜୀବନ, ରାଜନୀତି, ସାହିତ୍ୟ ଓ ସଂସ୍କୃତିକୁ ପରିପୁଷ୍ଟ କରିଥିବା ସ୍ମରଣୀୟ କୃତୀ ସନ୍ତାନମାନଙ୍କର ଜୀବନଚରିତ ତଥା ଅବଦାନ ସମ୍ବନ୍ଧରେ ସମ୍ୟକ ଆଲୋଚନା ମୂଳକ ପୁସ୍ତକ ପ୍ରକାଶନ ନିତାନ୍ତ ସ୍ୱାଗତଯୋଗ୍ୟ । ଏଭଳି ଦୁଇଟି ଦୀର୍ଘ ପ୍ରତ୍ୟାଶିତ ଓ ଏକାନ୍ତ ବାଞ୍ଛିତ ଗ୍ରନ୍ଥ ପ୍ରକାଶ ପାଇଛି ବିଗତ ବର୍ଷ ଶେଷଭାଗ ଓ ଚଳିତ ଶତାବ୍ଦୀର ଆଦ୍ୟଚରଣରେ ପ୍ରଥମଟି ରାଜଧାନୀ ଭୁବନେଶ୍ୱରରୁ ଏବଂ ଅନ୍ୟଟି ଶିଳ୍ପାଞ୍ଚଳ ବ୍ରହ୍ମପୁରରୁ । ଏଗ୍ରନ୍ଥ ଦ୍ୱୟରେ ଯଥାକ୍ରମେ ୧୦୦ ଓ ୧୧୫ ଜଣ କୃତି ସନ୍ତାନଙ୍କର ଜୀବନ ଆଲେଖ୍ୟ କେବଳ ରୂପାୟିତ ହୋଇନି, ତଦୁପରି ଓଡ଼ିଶାର ଧର୍ମ, ଶିକ୍ଷା, ସଂସ୍କୃତି, ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନ, ଓଡ଼ିଆ ଭାଷାର ପ୍ରସାର ଉଦ୍ୟମ ତଥା ରାଜନୈତିକ ଓ ସାମାଜିକ ବିବର୍ତ୍ତନ ପ୍ରକ୍ରିୟା ସମ୍ବନ୍ଧୀୟ ସାମୁହିକ ଐତିହାସିକ ବିକାଶ ଧାରା ସମ୍ପର୍କରେ ମଧ୍ୟ ଆଲୋକପାତ କରାଯାଇଛି ।

ଏହି କୃତିଦ୍ୱୟର ସ୍ରଷ୍ଟା ଶ୍ରୀ ଦଣ୍ଡପାଣି ପଣ୍ଡା ଓ ଅଧ୍ୟାପକ ରବି ନାରାୟଣଙ୍କ ସାହୁ ପ୍ରଚେଷ୍ଟା ସର୍ବଥା ପ୍ରଶଂସାର୍ହ । ପ୍ରତଃସ୍ମରଣୀୟ ଉତ୍କଳୀୟ ପ୍ରତିଭା ଫକୀରମୋହନ, ଗଙ୍ଗାଧର ମେହେର, ରାଧାନାଥ ରାୟ, ମଧୁବାବୁ, ମଧୁସୂଦନ ରାଓ,ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ, ଗୋପାଳଚନ୍ଦ୍ର ପ୍ରହରାଜ, ନୀଳମଣି ବିଦ୍ୟାରତ୍ନ, ଆଚାର୍ଯ୍ୟ ହରିହର, ଶଶିଭୂଷଣ ରଥ, ଶ୍ରୀବତ୍ସ ପଣ୍ଡା, ସାମନ୍ତ ଚନ୍ଦ୍ରଶେଖର, ରମାଦେବୀ, କୁନ୍ତଳା କୁମାରୀ, କୃଷ୍ଣଚନ୍ଦ୍ର

ଗଜପତି, କାଳୀଚରଣ, କାଳନ୍ଦୀ ଚରଣ, ନନ୍ଦ କିଶୋର, ବିଚ୍ଛନ୍ଦ ଚରଣ, ବୈଷ୍ଣବ ପାଣି, ହରେକୃଷ୍ଣ ମହତାବ, ରାଧାନାଥ ରଥ, ସୁରେନ୍ଦ୍ର ମହାନ୍ତି, ଶ୍ରୀରାମ ଦାସ, ଫତୁରାନନ୍ଦ, ନନ୍ଦିନୀ ଶତପଥି, ବିଜୁ ପଟ୍ଟନାୟକ, ବୃନ୍ଦାବନ ନାୟକ, ସତ୍ୟ ନାରାୟଣ ରାଜଗୁରୁ, ଦାଶରଥି ପଟ୍ଟନାୟକ ପ୍ରମୁଖ ୪୫ ଜଣ ସ୍ୱନାମଧନ୍ୟ ବ୍ୟକ୍ତିଙ୍କର ଜୀବନ ଆଲେଖ୍ୟଓ ଅବଦାନ ସମ୍ବନ୍ଧୀୟ ବିଚାର ଉଭୟ ଗ୍ରନ୍ଥରେ ଉପଲବ୍ଧ । ଏମାନଙ୍କ ସମେତ ଶ୍ରୀଯୁକ୍ତ ପଣ୍ଡାଙ୍କ ଗ୍ରନ୍ଥରେ ଉପେନ୍ଦ୍ର ଭଞ୍ଜ, ଅତୀବଡ଼ି ଜଗନ୍ନାଥ ଦାସ, ନବକୃଷ୍ଣ ଚୌଧୁରୀ, ଜୟୀ ରାଜଗୁରୁ, କବିସୂର୍ଯ୍ୟ ବଳଦେବ , ବୀର ସୁରେନ୍ଦ୍ର ସାଏ , ସୁଭାଷ ବୋଷ, ଚନ୍ଦନ ହଜୁରୀ, ବାସୁଦେବ ସୁଢ଼ଳଦେବ, ସହିଦ ଲକ୍ଷ୍ମଣ ନାୟକ, ମାଗୁଣି ବ୍ରହ୍ମା, ଭୀମ ଭୋଇ, କବିଶେଖର ଚିନ୍ତାମଣି, ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, କେଦାରନାଥ ମହାପାତ୍ର, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ବ୍ରହ୍ମାନନ୍ଦ ପଣ୍ଡା, ଲିଙ୍ଗରାଜ ପାଣିଗ୍ରାହୀ, ବିନାୟକ ଆଚାର୍ଯ୍ୟ,ଦିବାକର ପଟ୍ଟନାୟକ, ଅନନ୍ତ ତ୍ରିପାଠୀ ଶର୍ମା, ମୋହନ ନାୟକ, ଲକ୍ଷ୍ମଣ ମହାପାତ୍ର ପ୍ରମୁଖ ଅନ୍ୟ ୫୫ ଜଣଙ୍କ ସମ୍ବନ୍ଧରେ ସମ୍ୟକ ଆଲୋଚନା କରା ଯାଇଥିବା ବେଳେ ଅଧ୍ୟାପକ ରବି ନାରାୟଣଙ୍କ ରଚନାରେ ଜଗବନ୍ଧୁ ସିଂହ, ମାୟାଧର ମାନସିଂହ, ସୁରେନ୍ଦ୍ରନାଥ ଦ୍ୱିବେଦୀ ନିରଞ୍ଜନ ପଟ୍ଟନାୟକ, ରାଧାମୋହନ ଗଡ଼ନାୟକ, ଚିତ୍ତରଞ୍ଜନ ଦାସ, ଚନ୍ଦ୍ରଶେଖର ରଥ, ସୁଭଦ୍ରା ମହତାବ , ଅନ୍ନପୂର୍ଣ୍ଣା ମହାରଣା, ସରଳା ଦେବୀ, ମାଳତୀ ଚୌଧୁରୀ, ମନୋଜ ଦାସ, ଅନ୍ନଦା ରାୟ, ରାଜକିଶୋର ରାୟ, ରାମକୃଷ୍ଣ ନନ୍ଦ, ହରିହର ମହାପାତ୍ର, ସଂଯୁକ୍ତା ପାଣିଗ୍ରାହୀ, ସୁନନ୍ଦା ପଟ୍ଟନାୟକ ଆଦିଙ୍କ ସମେତ ତୁଳସୀ ମୁଣ୍ଡା, ସୁମତୀ ଦେବୀ, ପ୍ରିୟମ୍ବଦା ମହାନ୍ତି, ଗିରିବାଳା ମହାନ୍ତି, ଶିଳ୍ପପତି କୃଷ୍ଣଚନ୍ଦ୍ର ମହାନ୍ତି, ଯୋଗସାଧକ କୃଷ୍ଣ ସାମନ୍ତରାୟଙ୍କ ଭଳି ପ୍ରାୟ ୭୦ ଗୋଟି ଭିନ୍ନ ପ୍ରତିଭାଙ୍କୁ ସ୍ଥାନ ଦିଆଯାଇଛି । ''ଶତାବ୍ଦୀ ପୁରୁଷ'' ବହିଟିରେ କେତେକ ସ୍ଥଳେ ଜନ୍ମ ତାରିଖ ଉପଲବ୍ଧ ନ ହେଲେ ହେଁ, ଗୌରୀ ଶଙ୍କର, ପ୍ରାଣକୃଷ୍ଣ ପରିଜା, ଶ୍ରୀରାମ ଦାସ, ଆଇଜାକ୍ ସାନ୍ତ୍ରା, ସତ୍ୟପ୍ରିୟ ମହାନ୍ତିଙ୍କ ଭଳି ଅଳ୍ପ କେତେକ ବ୍ୟକ୍ତିଙ୍କ ଛଡ଼ା ଅନ୍ୟ ଶତାଧିକ ବ୍ୟକ୍ତିଙ୍କର ଫଟୋଚିତ୍ର ସନ୍ନିବେଶିତ ଏବଂ ରାଜା, ମହିଳା, ସାହିତ୍ୟିକ, ସମାଜସେବୀ, ବିଜ୍ଞାନୀ, ଶିଳ୍ପପତି, କଳା, ସଙ୍ଗୀତଜ୍ଞ ଇତ୍ୟାଦି ବ୍ୟକ୍ତିଗଣଙ୍କ ପରିଚୟ ପରିବେଶିତ । ପୁସ୍ତକର ପ୍ରଥମ ୩୨ ପୃଷ୍ଠାରେ ସନ୍ନିବିଷ୍ଟ ଓଡ଼ିଶାର ସଂକ୍ଷିପ୍ତ ଇତିହାସ ଏହି ଗ୍ରନ୍ଥର ଅନ୍ୟତମ ଆକର୍ଷଣ ।

ଶ୍ରୀଯୁକ୍ତ ପଣ୍ଡାଙ୍କ କୃତିର ବିଶେଷତ୍ୱ ଏହି ଯେ, ସେ ନିଜେ ଜଣେ ଜ୍ୟୋତିର୍ବିଦ୍ ହୋଇଥିବାରୁ ତାଙ୍କ ଗ୍ରନ୍ଥରେ ପ୍ରତ୍ୟେକ କୃତୀ ସନ୍ତାନଙ୍କ ସଠିକ୍ ଜନ୍ମଜାତକ ପ୍ରଦତ୍ତ ଏବଂ ବିଭିନ୍ନ ବ୍ୟକ୍ତିଙ୍କ ଜୀବନଧାରା ତଥା ଉତ୍ଥାନ ପତନ,ସାଫଲ୍ୟ ବୈଫଲ୍ୟ, ଆଶା, ନିରାଶା, ଦୁଃଖ ଯନ୍ତ୍ରଣାଦି କିଭଳି ଗ୍ରହ ପ୍ରଭାବ ଦ୍ୱାରା ନିୟନ୍ତ୍ରିତ, ତାହା ସ୍ୱତନ୍ତ୍ର ଭାବରେ ବିଶଦ୍ ରୂପେ ଶାସ୍ତ୍ରସମ୍ମତ ରୀତିରେ ଆଲୋଚିତ ହୋଇଛି । ମଧୁବାବୁ କାହିଁକି ନିଃସନ୍ତାନ ହେଲେ ,

ଗୋପବନ୍ଧୁ କାହିଁକି ବାଲ୍ୟାବସ୍ଥାରେ ପିତାମାତଙ୍କୁ ହରାଇଥିଲେ ଓ ତାଙ୍କର ତିନିପୁତ୍ର ଅକାଳରେ ମୃତ୍ୟୁବରଣ କଲେ । ରାଧାନାଥ ରଥ କିପରି ଦୀର୍ଘାୟୁ ହେଲେ ହେଁ'କେମଦ୍ରୁମ ଯୋଗ' ଫଳ ଭୋଗିଥିଲେ । ବିଜୁବାବୁ କିପରି ଦୁଃସାହସୀ ହୋଇଥିଲେ । ଲକ୍ଷ୍ମଣ ମହାପାତ୍ର କାହିଁକି ଅପୁତ୍ରିକ ଥିଲେ ଓ ଆତତାୟୀ ହସ୍ତରେ ନିହତ ହେଲେ ଇତ୍ୟାଦି ସମସ୍ତଙ୍କ ବିଷୟରେ ସେ ସବିଶେଷ ଆଲୋଚନା କରିଛନ୍ତି । ଶ୍ରୀ ପଣ୍ଡା ପ୍ରତ୍ୟେକଙ୍କ ବିଷୟରେ ସମତୁଲ ବିଚାର ଉପସ୍ଥାପନ କରିଥିବା ବେଳେ ଗୌରୀଶଙ୍କର, ଶ୍ରୀବତ୍ସ ପଣ୍ଡା, ଶ୍ୟାମସୁନ୍ଦର ରାଜଗୁରୁ, ବୃନ୍ଦାବନ୍ଦ ନାୟକ ପ୍ରମୁଖଙ୍କ ସମ୍ପର୍କରେ ଅଧ୍ୟାପକ ରବି ନାରାୟଣ କିଞ୍ଚିତ ଆଭାସ ମାତ୍ର ଦେଇଛନ୍ତି । ଏଣୁ ପରବିର୍ତ୍ତୀ ସଂସ୍କରଣରେ କେତେକ ଆଲୋଚନାକୁ ବିସ୍ତୃତ କରାଯିବାର ଅବକାଶ ରହିଛି । ତେବେ ଓଡିଆ ଭାଷାରେ ଏତାଦୃଶ୍ୟ ଗ୍ରନ୍ଥର ଅଭାବ ଦୃଷ୍ଟିରୁ ଉଭୟ ଗ୍ରନ୍ଥ ପରସ୍ପର ପରିପୂରକ ଏବଂ ଏକାନ୍ତ ଉପଯୋଗୀ । **ବିଶେଷତଃ, ଜ୍ୟୋତିଷପ୍ରେମୀଙ୍କ ପକ୍ଷରେ ଶ୍ରୀଯୁକ୍ତ ପଣ୍ଡାଙ୍କ ବହିଟି ଅବଶ୍ୟ ସଂଗ୍ରହଣୀୟ ।**

**(୬) ନକ୍ଷତ୍ର, (ନଭେମ୍ବର-ଡ଼ିସେମ୍ବର, ୧୯୯୯):-** ଜ୍ୟୋତିର୍ବିଦ୍ୟା ବାଚସ୍ପତି ଦଣ୍ଡପାଣି ପଣ୍ଡାଙ୍କ ଏ ପୁସ୍ତକଟି ଏକ ବିରଳ କୃତି । ବିଶେଷତଃ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ବ୍ୟକ୍ତିତ୍ୱମାନଙ୍କର ଜନ୍ମଜାତକ ଓ ଜୀବନୀ ଏଥିରେ ପ୍ରାୟ ବିକ୍ଷିପ୍ତରୂପେ ପ୍ରତିଫଳିତ କରାଯାଇଛି । ଜନ୍ମ ପତ୍ରିକାରୁ ଗ୍ରହ-ନକ୍ଷତ୍ରଙ୍କ ଅବସ୍ଥିତିକୁ ଆଧାରକରି ମହାପୁରୁଷ ରୂପେ କିପରି ଅବତୀର୍ଣ୍ଣ ହୋଇଛନ୍ତି ତାର ଅନୁଶୀଳନ ରହିଛି ଏଥିରେ, ଅତିବଡ଼ିଙ୍କଠାରୁ ନିମାଇଁ ବାନାର୍ଜୀଙ୍କ ପର୍ଯ୍ୟନ୍ତ ସମୁଦାୟ ଏକଶତ ଜଣ କୃତୀ ବିଦ୍ୱାନଙ୍କ ଜୀବନୀ ଲେଖାକୁ ଅତ୍ୟନ୍ତ ଗଭୀରତାର ସହିତ ଆଲୋଚନା କରିଛନ୍ତି । ଶ୍ରୀଯୁକ୍ତ ପଣ୍ଡା, ତତ୍ ସହିତ ଓଡ଼ିଶାର ଐତିହାସିକ, ରାଜନୈତିକ, ଧାର୍ମିକ, ସାମାଜିକ, ସାଂସ୍କୃତିକ, କଳାତ୍ମକ ବିବରଣୀ ବ୍ୟଞ୍ଜନା ମଧ୍ୟ ଏ ପୁସ୍ତକରେ ଆପତଃ ସମ୍ୟକ ସନ୍ନିହିତ ।

ଏ ପୁସ୍ତକ ରଚନାର ଉପଲକ୍ଷ୍ୟ ସଂପର୍କରେ ଶ୍ରୀଯୁକ୍ତ ପଣ୍ଡା ତାଙ୍କ "ଭୂମିକା" ପ୍ରାରମ୍ଭରେ ହିଁ ପ୍ରାଞ୍ଜଳ କରିଛନ୍ତି । ମହାନ ବ୍ୟକ୍ତିତ୍ୱମାନଙ୍କର ସ୍ମୃତି ରୋମନ୍ଥନ ହିଁ କର୍ତ୍ତବ୍ୟ ଓ ଏ କର୍ତ୍ତବ୍ୟ ସଂପାଦନ କରିବା ପାଇଁ ସେ ଉଦ୍ୟମ କରିଛନ୍ତି । ଏ ଉଦ୍ୟମ ଅଭିନନ୍ଦନୀୟ । ମହାନ ବ୍ୟକ୍ତିମାନଙ୍କର ନାକ୍ଷତ୍ରିକ ଜ୍ଞାନ ତଥା ନକ୍ଷତ୍ର ପ୍ରଭାବରେ ସେମାନଙ୍କ ଜୀବନଦର୍ଶନର ଅଭିଜ୍ଞାନ ପାଠକମାନଙ୍କ ପାଇଁ ଆବଶ୍ୟକ । ପୂର୍ବସୂରୀଙ୍କ ଠୁ ଆରମ୍ଭ କରି ସାଂପ୍ରତିକ ବିଶିଷ୍ଟ ବ୍ୟକ୍ତିତ୍ୱମାନଙ୍କ ବିଷୟରେ ଅନେକ କିଛି ଧାରଣା ଅବଧାରଣା ସଂଗ୍ରହ କରିଛନ୍ତି ଲେଖକ ଶ୍ରୀଯୁକ୍ତ ପଣ୍ଡା । ଏ ପ୍ରୟାସ ଓଡ଼ିଶାରେ ସର୍ବପ୍ରଥମ, ଆଉ ତାଙ୍କ ଦ୍ୱାରା ହିଁ ଏଭଳି ଏକ କଷ୍ଟ ସାଧ୍ୟ ପ୍ରୟାସକୁ ସଫଳ ରୂପାୟନ ସମ୍ଭବ ହୋଇ ପାରିଛି ।

ପୁସ୍ତକଟିର ପ୍ରଚ୍ଛଦ ଯଦିଓ ସାଧାରଣ ଓ ବର୍ଣ୍ଣହୀନ, ମୁଦ୍ରଣ ଖୁବ୍ ସ୍ପଷ୍ଟ, ନିର୍ଭୁଲ ଓ ନିର୍ମଳ । ୩୬ ୭ ପୃଷ୍ଠା ସମ୍ବଳିତ ଏ ସ୍ଥୂଳକାୟ ପୁସ୍ତକଟିର ମୂଲ୍ୟ ଯଥେଷ୍ଟ କମ୍ ଯାହା ଯେକୌଣସି ଆଗ୍ରହୀ ପାଠକ ବିନିଯୋଗ କରି ଏହାକୁ ସଂଗ୍ରହ ତଥା ସଂରକ୍ଷଣ କରିପାରନ୍ତି । **ପୁସ୍ତକଟି ସବୁସ୍ତରର ପାଠକଙ୍କ ନିମନ୍ତେ ଉପଯୋଗୀ ।**

**(୭) ଧରିତ୍ରୀ,** ଛୁଟିଦିନ, ତା ୨୦-୨୬, ଫେବୃୟାରୀ, ୨୦୦୦ :- ଜାତକ ଜୀବନର ପ୍ରତିଫଳନ, ଜାତକରୁ ବ୍ୟକ୍ତିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସୂଚନା ମିଳିଥାଏ । ଆଧୁନିକ ତଥା ବିଜ୍ଞାନ ଓ ପ୍ରଯୁକ୍ତି ଯୁଗରେ ମଧ୍ୟ ଜାତକ ତା'ର ପ୍ରାସଙ୍ଗିକତା ହରାଇ ନାହିଁ । ପ୍ରତିଭାବାନ ବ୍ୟକ୍ତିଙ୍କର ଜାତକରେ କେଉଁ ଧରଣର ଅନୁକୂଳ ଗ୍ରହାବସ୍ଥାନ ଯୋଗୁ ସେମାନେ ଜୀବନରେ କୃତିତ୍ୱ ହାସଲ କିରପାରିଲେ ଓ ଚିରସ୍ମରଣୀୟ ହୋଇଗଲେ ତାହାକୁ ଜ୍ୟୋତିର୍ବିଦ୍ ଶ୍ରୀ ପଣ୍ଡା ତାଙ୍କର ଏହି ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ବିଶେଷକରି ଓଡ଼ିଶାର କୃତି ସନ୍ତାନମାନଙ୍କର ଜାତକକୁ ସେ ବିଶ୍ଳେଷଣ କରିଛନ୍ତି ଏଥିରେ । ମହାପୁରୁଷ ଜଗନ୍ନାଥ ଦାସ, କବି ସମ୍ରାଟ ଉପେନ୍ଦ୍ରଭଞ୍ଜ, ସ୍ୱାଧୀନତା ସଂଗ୍ରାମୀ ଜୟୀରାଜଗୁରୁ, କର୍ମବୀର ଗୌରୀଶଙ୍କର, ଭକ୍ତକବି ମଧୁସୂଦନ ରାଓ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଠାରୁ ଆରମ୍ଭ କରି ବିଜୁ ପଟ୍ଟନାୟକ, ନନ୍ଦିନୀ ଶତପଥୀ, ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସମେତ ପ୍ରାୟ ୧୦୦ ଜଣ ଉତ୍କଳ ସନ୍ତାନଙ୍କର ଜାତକ ସମ୍ପର୍କରେ ଉଲ୍ଲେଖ କରାଯାଇଛି । ଓଡ଼ିଶାର କୃତବିଦ୍ୟ  ସନ୍ତାନମାନଙ୍କର ଜନ୍ମ ଓ ମହାପ୍ରୟାଣ ତିଥି, ବାର, ସମୟ ସମ୍ପର୍କରେ ଏହି ପୁସ୍ତକରୁ ଯଥେଷ୍ଟ ତଥ୍ୟ ମିଳିପାରିବ । **ଲେଖକ ଶ୍ରୀ ପଣ୍ଡାଙ୍କର ଏହି ଉଦ୍ୟମ ପ୍ରଶଂସନୀୟ ନିଶ୍ଚୟ ।**

**(୮) ଭାଗ୍ୟଲିପି,** ମାର୍ଚ୍ଚ-୨୦୦୦ :- ଏହି ପୁସ୍ତକଟିରେ ଓଡ଼ିଶାର ଶହେଜଣ ବିଶିଷ୍ଟ ବ୍ୟକ୍ତିତ୍ୱ ଯେଉଁମାନେ ମହାପୁରୁଷ, ସାଧୁସନ୍ଥ, ପଣ୍ଡିତ, ଶିକ୍ଷାବିତ୍, ରାଜା, ମହାରାଜା, ଜ୍ୟୋତିର୍ବିଦ୍, କବି, ଲେଖକ, ସାମ୍ବାଦିକ, ରାଷ୍ଟ୍ରପତି, ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ଶାସକ ଏବଂ ବିଭିନ୍ନ କ୍ଷେତ୍ରରେ ବିଦ୍ୱାନ୍ ସେମାନଙ୍କର ଜୀବନ ବହୁ ବର୍ଷର ଅଧ୍ୟବସାୟ କରି ଲେଖକ ଶ୍ରୀ ପଣ୍ଡା ସଂଗ୍ରହ ଓ ବିଚାର କରିଛନ୍ତି ।

ଏକ ଦୃଷ୍ଟିରୁ ଦେଖିଲେ ଓଡ଼ିଶାର ରାଜନୀତି, ସାମାଜିକ ନୀତି, କଳା, ସାହିତ୍ୟ ଓ ଶିକ୍ଷାକ୍ଷେତ୍ରରେ ଏହା ଏକ ଅଭିନବ ଜ୍ଞାନ କୌଶଳ ହୋଇଥିବା ସ୍ଥଳେ ଭିନ୍ନ ଦୃଷ୍ଟିରୁ ଏହା ଜାତକ ବିଚାରର ଏକ ପୂର୍ଣ୍ଣାଙ୍ଗ ଗ୍ରନ୍ଥ ବୋଲି ମନେହୁଏ । **ଏଣୁ ପ୍ରତ୍ୟେକ ବ୍ୟକ୍ତିଙ୍କର ପାଠାଗାରରେ ସାଇତି ରଖିବା ଭଳି ଏକ ଅନବଦ୍ୟ ଜ୍ୟୋତିଷ ଏବଂ ଇତିହାସର**

ବିଶିଷ୍ଟ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀଯୁକ୍ତ ପଣ୍ଡାଙ୍କର ଏହି ନିରବଚ୍ଛିନ୍ନ ସାଧନା ଏବଂ ବିଦ୍ୱତ୍ତା ଅନ୍ୟକୁ ଅନୁପ୍ରାଣୀତ କରିବା ସଙ୍ଗେ ସଙ୍ଗେ ବହୁ ପ୍ରେରଣାଦାୟକ ହେବାର ମନେ ହୁଏ । ବିଶିଷ୍ଟ ବ୍ୟକ୍ତିମାନଙ୍କର ଜୀବନୀ ସଂଗ୍ରହରେ ସେ ଯେଭଳି କଠୋର ପରିଶ୍ରମ କରିଛନ୍ତି, ଜାତକ-ବିଚାର କ୍ଷେତ୍ରରେ ମଧ୍ୟ ସେହିପରି ବହୁ ଜ୍ଞାନଗର୍ଭକ ଜ୍ୟୋତିର୍ବିଜ୍ଞାନ ତଥ୍ୟର ଅନୁଶୀଳନ କରିଛନ୍ତି । ଏହି ପୁସ୍ତକର ଶତତମ ଜାତକରେ ଶ୍ରୀ ନିମାଇଁ ବାନାର୍ଜୀଙ୍କର ଜାତକ ଓ ଜୀବନୀ ଓ ଜାତକ ସ୍ଥାନ ପାଇଛି ।

ଅନ୍ୟାନ୍ୟ ପତ୍ର ପତ୍ରିକାରେ ଏହି ପୁସ୍ତକର ବହୁ ଉଚ୍ଚପ୍ରଶଂସା କରାଯାଇଛି ।

୧. We are hopeful that the book will be much popular and find place in the libraries of intellectuals. - (Planets & Forecast.)

୧. ପ୍ରଥମଥର ପାଇଁ ଏଭଳି ଏକ ପୁସ୍ତକ ବହୁ ଗବେଷଣା ଓ ପରିଶ୍ରମ କରି ସେ ଲେଖିଛନ୍ତି । (ସମାଜ, ତା ୫.୧୨.୯୯)

୨. ପୁସ୍ତକଟି ବେଶ୍ ତଥ୍ୟପୂର୍ଣ୍ଣ । (ପ୍ରଜାତନ୍ତ୍ର - ତା ୩.୧୨.୯୯)

୩. **ଅନ୍ୟ ଭାଷାରେ କହିବାକୁ ଗଲେ ଓଡ଼ିଶା ସମ୍ବନ୍ଧରେ ଏହା ନିଶ୍ଚିତ ଭାବରେ ସଂଗ୍ରହଣୀୟ ଏକ ସଂକ୍ଷିପ୍ତ ଜ୍ଞାନକୋଷ ।** (ସପ୍ତାହିକ ସମୟ, ୨୨.୧୨.୯୯)

୪. ପୁସ୍ତକଟି ଜାତକ ପ୍ରେମୀ ପାଠକମହଲରେ ଆଦୃତ ହେବ ବୋଲି ଆଶା ।

**(9) Planets & Forecast, Jan. -2000 :-** It is a well bounded, voluminous book , cover the life history as well as horoscope analysis of the one hundred famous great men of Orissa in the field of politics, cultural, social, literature, Astrology, administration, medicine and various other important branches of society who have enriched Orissa by their honest contribution.

The book is a notable horoscope of those hundreds of wrothy sons of mother Orissa "Utkal ", the discussion of whose life is itself the history of the land. From this book one can know the history, geography, society at large, religion, literature, politics and every thing of Orissa. In one word it can be said that the book covers A to Z of Orissa in nutshell.

The Astrological interpretations of the author is superb since he is a famous astrologer contributing regular articles to various astrological journals and written books on Astro-Science. This will

be of immense help to Oriya knowing people who can consult this book as research guide not only in the field of astrology but also in every sphere of knowledge. It has fulfilled a long demand of Astro-science in Oriya lanuage and Oriya knowing Astrologers should take its adventage. The book contains the horoscope and life history of Dr. Nimai Banerjee who has also countributed a foreward to this book as a research note. **We are hopeful that the book will be much popular and find place in the libraries of intellectuals.**

**(୧୦) ଦିନ ଲିପି, ତା - ୪.୬.୨୦୦୦ :-** ଜାତକ ହେଉଛି ଜୀବନର ପ୍ରତିବିମ୍ବ । ପ୍ରତିଭାବାନ ବ୍ୟକ୍ତିଙ୍କର ଜାତକରେ କି ପ୍ରକାର ଅନୁକୂଳ ଗ୍ରହାବସ୍ଥାନ ଯୋଗୁ ସେମାନଙ୍କ ଜୀବନରେ କୃତିତ୍ୱ ହାସଲ କରିପାରିଲେ ତାହାର ଆଲୋଚନା କଲେ ଜ୍ୟୋତିଷ ପ୍ରତି ଜନସାଧାରଣଙ୍କ ଆଗ୍ରହ ବୃଦ୍ଧି ହେବା ସହ ଜ୍ୟୋତିଷ ବିଜ୍ଞାନର ମହତ୍ୱ ବୃଦ୍ଧି ପାଇଥାଏ ।

ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ହାସଲ କରିଥିବା ବିଶିଷ୍ଟ ବ୍ୟକ୍ତିଙ୍କର ଜାତକ ସଂଗ୍ରହ କରି ସେମାନଙ୍କ ଜୀବନୀ ସହିତ ଜାତକର ଆଲୋଚନା କରାଯାଇଥିବାରୁ ଶ୍ରୀ ପଣ୍ଡାଙ୍କ ରଚିତ ଓଡ଼ିଶାର କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ ପୁସ୍ତକଟି ବେଶ୍ ଉପାଦେୟ ହୋଇପାରିଛି । ଓଡ଼ିଶାର ବିଭିନ୍ନ ମହାପୁରୁଷ,ସାଧୁ, ସନ୍ଥ, ପଣ୍ଡିତ, ଶିକ୍ଷାବିତ୍, କବି, ଲେଖକ, ସାମ୍ବାଦିକ, ଜ୍ୟୋତିର୍ବିଦ୍, ରାଜା, ମହାରାଜା, ସ୍ୱାଧୀନତା ସଂଗ୍ରାମୀ, ଶାସକ, ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ପ୍ରଶାସକ, ବିଧାୟକ, ସାଂସଦ, ଚିକିତ୍ସକ, ଆଇନଜ୍ଞ ଆଦି ପ୍ରାୟ ୧୦୦ ଜଣ ବିଶିଷ୍ଟ ବ୍ୟକ୍ତିଙ୍କର ଜାତକ ଓ ଜୀବନୀ ଏହି ପୁସ୍ତକଟିରୁ ମିଳିପାରିବ ।

ଏତଦ୍ ବ୍ୟତିତ କେତେକଙ୍କ ଜୀବନୀ ଆଲୋଚନା ଶେଷରେ ଓଡ଼ିଶାର ତତ୍କାଳୀନ ପରିସ୍ଥିତିର ସଂକ୍ଷିପ୍ତ ବିବରଣୀ ସହ ଓଡ଼ିଶାର ଇତିହାସ, ସଂସ୍କୃତି, ଧର୍ମ, ସାହିତ୍ୟ, କଳା, ରାଜନୀତି ବିଷୟରେ ମଧ୍ୟ ଉକ୍ତ ପୁସ୍ତକରୁ ସଂକ୍ଷିପ୍ତ ପରିଚୟ ମିଳିପାରିବ ।

ଓଡ଼ିଆ ଭାଷାରେ ଏହିପରି ଏକ ପୁସ୍ତକ ପୂର୍ବରୁ ପ୍ରକାଶିତ ହୋଇ ନ ଥିଲା । ଲେଖକଙ୍କର ଏହା ଏକ ନୂତନ ପଦକ୍ଷେପ । ୩୭୭ ପୃଷ୍ଠା ବିଶିଷ୍ଟ ବୋର୍ଡ଼ ବନ୍ଧାଇ ହୋଇଥିବା ଏହି ପୁସ୍ତକଟିର ମୂଲ୍ୟ ୮୦ ଟଙ୍କା ରଖାଯାଇଛି ।

**(୧୧) ଜୀବନ ରଂଗ, ମାର୍ଚ୍ଚ/ଏପ୍ରିଲ୍ ୨୦୦୦ :-** ଏହି ପୁସ୍ତକରେ ଓଡ଼ିଶାର ଏକ ଶହ ବରପୁତ୍ରମାନଙ୍କର ଜାତକ ସଂପର୍କରେ ଟିପ୍ପଣୀ ସହିତ ଜୀବନୀ ଓ କୃତି ଲିପିବଦ୍ଧ ହୋଇଛି । ଓଡ଼ିଶାରେ ଏ ପ୍ରକାର ଉଦ୍ୟମ ପ୍ରଥମ । ବରପୁତ୍ରମାନଙ୍କ ମଧ୍ୟରେ ଓଡ଼ିଶାର ରାଜନୀତି, ସାହିତ୍ୟ, ସଂସ୍କୃତି ତଥା ସମାଜସେବୀ କ୍ଷେତ୍ରରେ ପ୍ରତିଷ୍ଠିତ ବରିଷ୍ଠ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କର ଦୁଷ୍ପ୍ରାପ୍ୟ ଜନ୍ମ ଜାତକ ସ୍ଥାନ ପାଇଛି ।

ଆଲୋଚିତ ପୁସ୍ତକରେ ଅବଶ୍ୟ କେତେକ ଅପେକ୍ଷାକୃତ କମ ଜଣାଶୁଣା ବ୍ୟକ୍ତିତ୍ୱମାନଙ୍କର ଆଲେଖ୍ୟ ପ୍ରକାଶ ପାଇଛି । ଏହି ପୁସ୍ତକଟି ଲାଇବ୍ରେରୀ ପାଇଁ ଏକ ଉପାଦେୟ ପୁସ୍ତକ ତଥା ଗବେଷକମାନଙ୍କ ପାଇଁ ଏକାନ୍ତ ସଂଗ୍ରହଣୀୟ ହେବ ।

ଶ୍ରୀ ପଣ୍ଡା ଆଉ ଏକ ପୁସ୍ତକ ସଂକଳନ କରିବା ପାଇଁ ମଧ୍ୟ ମନସ୍ଥ କରିଛନ୍ତି । ତାଙ୍କର ଉଦ୍ୟମ ସଫଳ ହେଉ ଏହାହିଁ କାମନା ।

**(୧୨) ଦୈନିକ ଆଶା,** ତା ୭.୪.୨୦୦୦ :- ଲେଖକଙ୍କ ଦ୍ୱାରା ପ୍ରକାଶିତ ଏହି ଗ୍ରନ୍ଥରେ ଓଡ଼ିଶାର ଶହେଜଣ କୃତୀ ସନ୍ତାନଙ୍କ ଜାତକ ଓ ସଂକ୍ଷିପ୍ତ ଜୀବନୀ ସ୍ଥାନ ପାଇଛି । ଅତିବଡ଼ୀ ଜଗନ୍ନାଥ, ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ, ଯଦୁମଣି, ସୁରେନ୍ଦ୍ର ସାଏ , ଜୟୀ ରାଜଗୁରୁ, ସାମନ୍ତ ଚନ୍ଦ୍ରଶେଖର, ଗୌରୀଶଙ୍କର ରାୟ, ଫକୀରମୋହନ, ମଧୁସୂଦନ ଦାସ, ରାଧାନାଥ ରାୟ, ଭୀମଭୋଇ, ଗଙ୍ଗାଧର ମେହେର, ମାଗୁଣି ବ୍ରହ୍ମା, ବିଶ୍ୱନାଥ ଦାସ, କୃଷ୍ଣଚନ୍ଦ୍ର ଗଜପତି, ବିକ୍ରମ ଦେବ ବର୍ମା, ଶ୍ରୀବତ୍ସ ପଣ୍ଡା, ସୁଜଳ ଦେବ, ନୀଳମଣି ବିଦ୍ୟାରତ୍ନ, ହରିହର ମର୍ଦ୍ଦରାଜ, ଗୋପାଳ ପ୍ରହରାଜ, ଗୋପବନ୍ଧୁ, ବୈଷ୍ଣବ ପାଣି, ଶଶିଭୂଷଣ ରଥ, ଗୋଦାବରୀଶ ମହାପାତ୍ର, ରାଜେନ୍ଦ୍ର ନାରାୟଣ ସିଂହଦେଓ,ଶ୍ରୀ ରାମଚନ୍ଦ୍ର ଦାସ, ବୀର ହନୁମାନ ଶାସ୍ତ୍ରୀ ପ୍ରମୁଖ ସାହିତ୍ୟିକ, ଗବେଷକ, ଐତିହାସିକ, ରାଜନୈତିକଙ୍କ ଜାତକ ଓ ଜୀବନୀ ଲେଖକ ଦଣ୍ଡପାଣି ପଣ୍ଡା ସଂଗ୍ରହ କରି ବିଶ୍ଳେଷଣ କରିଛନ୍ତି । ବହୁ ପରିଶ୍ରମ ସାପେକ୍ଷ ଏହି କାର୍ଯ୍ୟ ଅତ୍ୟନ୍ତ ନିଷ୍ଠାର ସହିତ ସମାପନ କରି ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ଶ୍ରୀ ପଣ୍ଡା ଉଲ୍ଲେଖନୀୟ ଅବଦାନ ଦେଇଛନ୍ତି । କୃତୀ ସନ୍ତାନମାନଙ୍କର କାର୍ଯ୍ୟ କ୍ଷେତ୍ରର ଐତିହାସିକ ବିବରଣୀ ମଧ୍ୟ ପ୍ରଦାନ କରିଛନ୍ତି । ଏଥିରୁ ଓଡ଼ିଶାର ସମ୍ବାଦ ପତ୍ର, ଶିକ୍ଷା, ଧର୍ମଧାରଣା, ପ୍ରଦେଶଗଠନ, ସ୍ୱାଧୀନତା ଆନ୍ଦୋଳନ, ସାହିତ୍ୟ ଚର୍ଚ୍ଚା ଓ ଖ୍ୟାତନାମା ଅନୁଷ୍ଠାନଗୁଡ଼ିକ ସମ୍ପର୍କରେ ମଧ୍ୟ ବହୁ ମୂଲ୍ୟବାନ ତଥ୍ୟ ଜାଣିବାକୁ ମିଳୁଛି । ଏଭଳି କାର୍ଯ୍ୟ ଅଭିନନ୍ଦନୀୟ ।

**(୧୩) ସନ୍ଧାନୋତ୍ତର ସମୀକ୍ଷା** - ୧୩/୧୯.୧୦.୨୦୦୨ :- ଏଥିରେ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ସ୍ୱନାମଧନ୍ୟ ଶହେଜଣ ଓଡ଼ିଆଙ୍କର ଜୀବନୀ ଓ ଜାତକ ସ୍ଥାନ ପାଇଛି । ସାହିତ୍ୟ ଜଗତର ଭକ୍ତକବି ଜଗନ୍ନାଥ ଦାସ, କବି ସମ୍ରାଟ ଉପେନ୍ଦ୍ରଭଂଜଙ୍କ ଠାରୁ ଆରମ୍ଭ କରି ବିପ୍ଳବୀ ଜୟୀ ରାଜଗୁରୁ, ସୁରେନ୍ଦ୍ର ସାଏ, ସଂସ୍କୃତି ପୃଷ୍ଠପୋଷକ ଶ୍ରୀରାମଚନ୍ଦ୍ର ଭଂଜଦେଓ, ହରିହର ମର୍ଦ୍ଦରାଜ ଦେଓ, କୃଷ୍ଣଚନ୍ଦ୍ର ଗଜପତି ଓ ସେହିଭଳି ରାଜନୀତି କ୍ଷେତ୍ରର ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକ ଆଦି ଶହେଜଣ

କୃତୀସ୍ତାନଙ୍କର ଜାତକ ଓ ଜୀବନୀ ସମତେ ଓଡ଼ିଶାର ଇତିହାସ, ଶିକ୍ଷା, ଧର୍ମ, ସଂସ୍କୃତି ଆଦି ଆଉ ୨୦ଟି ନିବନ୍ଧ ଏଥିରେ ସ୍ଥାନିତ ହୋଇଛି ।

ଲେଖକ ଶ୍ରୀଯୁକ୍ତ ପଣ୍ଡା ଏଥିପାଇଁ ବହୁଶ୍ରମ ସ୍ୱୀକାର କରିଛନ୍ତି ଏବଂ ଏପୁସ୍ତକ ଓଡ଼ିଆ ସାରସ୍ୱତ ଭଣ୍ଡାରର ଅମୂଲ୍ୟରତ୍ନ ଭଳି ମନେ ହେଉଛି । ଏଭଳି ତଥ୍ୟପୂର୍ଣ୍ଣ ଉପାଦେୟ ବହି ଖୁବ୍ କ୍ୱଚିତ୍ ହିଁ ଦେଖିବାକୁ ମିଳିଥାଏ । ଶ୍ରୀଯୁକ୍ତ ପଣ୍ଡା ଏଥିପାଇଁ ଅଭିନନ୍ଦନୀୟ ।

ଶ୍ରୀ ପଣ୍ଡା ଓଡ଼ିଶାର ଜଣେ ବିଶିଷ୍ଟ ଜ୍ୟୋତିର୍ବିଦ । ଜ୍ୟୋତିର୍ବିଜ୍ଞାନ ସାଙ୍ଗକୁ ଇତିହାସ ଗବେଷଣାରେ ମଧ୍ୟ ତାଙ୍କର ଗଭୀର ଆଗ୍ରହ ଓ ଅଧ୍ୟବସାୟ ରହିଛି । ତାଙ୍କର କାର୍ଯ୍ୟଯୋଜନାରୁ ଏହା ସୁସ୍ପଷ୍ଟ । ପଣ୍ଡା ମହୋଦୟଙ୍କ ଠାରୁ ଓଡ଼ିଶା ସାରସ୍ୱତ ଭଣ୍ଡାର ଅନେକ କିଛି ଆଶା କରେ ।

# ଭାରତର ଏକଶହ କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ

## ଲେଖକ ଓ ପ୍ରକାଶକ : ଶ୍ରୀ ଦଣ୍ଡପାଣି ପଣ୍ଡା

(ପ୍ରଥମ ପ୍ରକାଶ, ତା ୧୭.୨.୨୦୦୨, ପୃଷ୍ଠା ତ + ୩୫୬ = ୩୭୨)

ମୂଲ୍ୟ- ଟ ୧୨୦ଙ୍କା

**(୧) ସମାଜ, ତା ୩୧.୩.୨୦୦୨ :-** 'ଜାତକ' ଜୀବନର ପ୍ରତିବିମ୍ବ । **ପ୍ରତିଭାବାନ ବ୍ୟକ୍ତିଙ୍କର ଜାତକରେ କେଉଁ ଧରଣର ଅନୁକୂଳ ଗ୍ରହାବସ୍ଥାନ ଯୋଗୁ ସେମାନଙ୍କର ଜୀବନରେ କୃତିତ୍ୱ ହାସଲ କରିପାରିଛନ୍ତି ତାହା ପୁସ୍ତକରେ ବର୍ଣ୍ଣିତ ।** ବିଶିଷ୍ଟ ବ୍ୟକ୍ତିଙ୍କର ଜାତକ ସଂଗ୍ରହକରି ତାଙ୍କର ଜୀବନୀ ସହିତ ଜାତକ ସାମ୍ୟ ଥିବା ପୁସ୍ତକରେ ଆଲୋଚିତ । ଭାରତର ମହାପୁରୁଷ, ସାଧୁ, ସନ୍ଥ, ଶିକ୍ଷାବିତ୍, କବି, ଲେଖକ, ଜ୍ୟୋତିର୍ବିଦ୍, ରାଜା, ମହାରାଜା, ଶାସକ, ପ୍ରଶାସକ, ଚିକିତ୍ସକ, ଆଇନଜ୍ଞ, ବୈଜ୍ଞାନିକ, କଳାକାର, ଚିତ୍ରତାରକା, ଖେଳାଳୀ ପ୍ରଭୃତି ବିଭିନ୍ନ ଦିଗରେ କୃତୀ ସନ୍ତାନଙ୍କ ବିଷୟରେ ପୁସ୍ତକରୁ ଜାଣିହେବ ।

**(୨) ଦୈନିକ ସମୟ, ତା ୯.୬.୨୦୦୨:-** ପ୍ରକାଶ ପାଇଛି ଜ୍ୟୋତିର୍ବିଦ୍ୟାବାଚସ୍ପତି ଶ୍ରୀ ଦଣ୍ଡପାଣି ପଣ୍ଡାଙ୍କ ଦ୍ୱାରା ଲିଖିତ ପୁସ୍ତକ 'ଭାରତର ଏକ ଶହ କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ' । ସାଧାରଣତଃ ଆତ୍ମପ୍ରଚାର ବିମୁଖ ବହୁ ମହାପୁରୁଷ ନିଜର ରଚନାମାନଙ୍କରେ ବିଶେଷ କିଛି ଲେଖି ନଥାନ୍ତି । ତେଣୁ ଭିନ୍ନ ସୂତ୍ରରୁ ସେମାନଙ୍କର ଜନ୍ମ ବିବରଣୀ ଓ ଜୀବନଚରିତ ସଂଗ୍ରହ କରି ଜାତକ ଓ ଜୀବନୀ ଆଲୋଚନା କରିବା ନିଶ୍ଚିତ ରୂପେ କଷ୍ଟସାଧ୍ୟ । ଅପରପକ୍ଷରେ ସେମାନଙ୍କର ଜୀବନୀ ଯେଉଁମାନେ ଲେଖନ୍ତି, ସେମାନେ (ଅଧିକାଂଶ) ପୂର୍ଣ୍ଣାଙ୍ଗ ଜନ୍ମବିବରଣୀ ଯଥା - ଜନ୍ମ ତାରିଖ, ଜନ୍ମ ସମୟ ଓ ଜନ୍ମ ସ୍ଥାନ ଉଲ୍ଲେଖ କରିବାର ଆବଶ୍ୟକତା ଅନୁଭବ କରନ୍ତି ନାହିଁ । ଅନେକ ସମୟରେ ବ୍ୟକ୍ତିର ପ୍ରକୃତ ଜନ୍ମ ତାରିଖ ଭିନ୍ନ ହୋଇଥିବାରୁ ତଥାକଥିତ ଜୀବନୀ ପୁସ୍ତକରୁ ପ୍ରାପ୍ତ ସେପରି ଭ୍ରମାତ୍ମକ ଜନ୍ମ ତାରିଖକୁ ନେଇ ଜାତକ ଓ ଜୀବନୀ ଆଲୋଚନା କରିବା ତ୍ରୁଟିପୂର୍ଣ୍ଣ ହୋଇଥାଏ । ଏପରିସ୍ଥଳେ ବିଭିନ୍ନ ସୂତ୍ରରୁ ଭାରତର ଏକ ଶହ କୃତୀ ସନ୍ତାନଙ୍କ ଜନ୍ମ ବିବରଣୀ ସଂଗ୍ରହ କରି ସେମାନଙ୍କ ଜାତକ ଓ ଜୀବନୀ ଆଲୋଚନା କରିଥିବା ଶ୍ରୀ ପଣ୍ଡା ନିଶ୍ଚିତ ରୂପେ ପ୍ରଶଂସାର୍ହ ।

ଏହି ପୁସ୍ତକରେ ଜ୍ୟୋତିର୍ବିଦ୍ ଶ୍ରୀ ପଣ୍ଡା ଜାତକ ଆଲୋଚନା କମ୍ କରି ଜୀବନୀ ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ସେ ଯେତିକି ଜାତକ ଆଲୋଚନା କରିଛନ୍ତି ତାହା ଅତି ସରଳ ହୋଇଥିବାରୁ ସାଧାରଣ ପାଠକଙ୍କ ପକ୍ଷେ ବୁଝିବାରେ କୌଣସି ଅସୁବିଧା ହେବନାହିଁ । ଏହାଛଡ଼ା ଜ୍ୟୋତିଷ ସଂବନ୍ଧରେ ଜ୍ଞାନ ଥିବା କୌଣସି ବ୍ୟକ୍ତି ଯଦି ଚାହାନ୍ତି, ତେବେ ସେ ଏହି ପୁସ୍ତକରୁ ଆବଶ୍ୟକ ତଥ୍ୟ ନେଇ ନିଜେ ଅଧିକ ଜାତକ ଆଲୋଚନା କରିପାରିବେ । ପୁସ୍ତକଟି ଜ୍ୟୋତିଷ, ସାମ୍ବାଦିକ, ଛାତ୍ର, ଶିକ୍ଷକ, ଗବେଷକ ଏବଂ ଜିଜ୍ଞାସୁ ପାଠକଙ୍କ ପାଇଁ ଅତ୍ୟନ୍ତ ଉପାଦେୟ ।

ଗଣିତ ଜ୍ୟୋତିଷ ସର୍ବସମ୍ମତ ବିଜ୍ଞାନ ହୋଇଥିବାବେଳେ ଫଳିତ ଜ୍ୟୋତିଷ ଉପରେ କେତେକ ଲୋକଙ୍କର ମତ ପାର୍ଥକ୍ୟ ରହିଛି । ତେବେ ଜ୍ୟୋତିଷ ସମ୍ବନ୍ଧରେ ଜ୍ଞାନ ଥିବା କୌଣସି ବ୍ୟକ୍ତି ଏହାକୁ ଅବିଶ୍ୱାସ କରନ୍ତି ନାହିଁ । ଗ୍ରହ-ନକ୍ଷତ୍ର ପ୍ରଭାବ ଯେ ମନୁଷ୍ୟ ଉପରେ ରହିଛି ଏଥିରେ ସନ୍ଦେହ ନାହିଁ । ଏହି ପୁସ୍ତକରେ ଶ୍ରୀ ପଣ୍ଡା ଯେଉଁସବୁ ଖ୍ୟାତନାମା ବ୍ୟକ୍ତିମାନଙ୍କର ଜାତକ ଆଲୋଚନା କରିଛନ୍ତି ସେଥିରେ ସେ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ କରି କେଉଁ ଗ୍ରହ - ନକ୍ଷତ୍ରଙ୍କ ଶୁଭ ପ୍ରଭାବରେ ଉକ୍ତ ବ୍ୟକ୍ତି ସମାଜରେ ପ୍ରତିଷ୍ଠା ଲାଭ କରିପାରିଲେ ତାହା ଦର୍ଶାଇଛନ୍ତି । ଏଣୁ ଏହି ପୁସ୍ତକଟି ସାଧାରଣ ଜନତାଙ୍କ ମନରେ ଜ୍ୟୋତିଷ ଶାସ୍ତ୍ର ପ୍ରତି ବିଶ୍ୱାସ ପୁନଃପ୍ରତିଷ୍ଠା କରିବ ଏଥିରେ ସନ୍ଦେହ ନାହିଁ ।

ଭଗବାନ ରାମ ଓ କୃଷ୍ଣଙ୍କ ଠାରୁ ଆରମ୍ଭ କରି ବିଶ୍ୱସୁନ୍ଦରୀ ଐଶ୍ୱର୍ଯ୍ୟା ରାୟ ପର୍ଯ୍ୟନ୍ତ ଏବଂ ପୁରାଣ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ୧୦୦ ଜଣ ମହାପୁରୁଷ ଅଥବା କୌଣସି କ୍ଷେତ୍ରରେ ବିଶେଷ ଖ୍ୟାତି ଅର୍ଜନ କରିଥିବା ବିଶିଷ୍ଟ ବ୍ୟକ୍ତିଙ୍କ ଜାତକ ଓ ଜୀବନୀ ଆଲୋଚନା କରାଯାଇଛି ଏହି ପୁସ୍ତକରେ । ଏଥିରୁ ପାଠକମାନେ ଭାରତର ସାଧୁ, ସନ୍ଥ, କବି, ଲେଖକ, ଶାସକ, ଜ୍ୟୋତିର୍ବିଦ, ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ବୈଜ୍ଞାନିକ, କଳାକାର, ଚିତ୍ରତାରକା ପ୍ରଭୃତିଙ୍କ ବିଷୟରେ ଜ୍ଞାନ ଅର୍ଜନ କରିପାରିବେ ।

ଏହାଛଡ଼ା ଲେଖକ ବିଭିନ୍ନ ସମୟରେ ଜନ୍ମଗ୍ରହଣ କରିଥିବା ବିଭିନ୍ନ ମହାପୁରୁଷଙ୍କ ଜୀବନୀ ଆଲୋଚନା କଲାବେଳେ ସେହି ସମୟର ଅନେକ ବିଶିଷ୍ଟ ଘଟଣାବଳୀ ସମ୍ବନ୍ଧରେ ମଧ୍ୟ ଉଲ୍ଲେଖ କରିଛନ୍ତି । ଯାହା ପୁସ୍ତକକୁ ସବୁ ବିଷୟରେ ଅଳ୍ପ ଅଳ୍ପ ଅଥଚ ଏକ ପୂର୍ଣ୍ଣାଙ୍ଗ ଇତିହାସରେ ପରିଣତ କରିଛି । ତେଣୁ ପୁସ୍ତକଟି ସବୁ ଦୃଷ୍ଟିରୁ ଉପାଦେୟ ହୋଇପାରିଛି । ।

ଇତିପୂର୍ବରୁ ଶ୍ରୀ ପଣ୍ଡା 'ଓଡ଼ିଶାର କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ' ନାମରେ ଅନ୍ୟ ଏକ ଗ୍ରନ୍ଥରେ ଓଡ଼ିଶାର ୧୦୦ରୁ ଊର୍ଦ୍ଧ୍ୱ କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ ଆଲୋଚନା କରିଥିଲେ । ତାହା ବିଶେଷ ଜନାଦୃତ ଲାଭ କରିଥିଲା । ଏହି ପୁସ୍ତକ ମଧ୍ୟ ତତୋଽଧିକ ଜନପ୍ରିୟ ହୋଇପାରିବ ଏଥିରେ ସନ୍ଦେହ ନାହିଁ ।

**(୩) ପ୍ରଜାତନ୍ତ୍ର**, ତା ୧୮.୩.୨୦୦୨ :- ଯେଉଁ ମହାନ ବ୍ୟକ୍ତି ଦେଶ ଓ ଜାତିର ସମୃଦ୍ଧି ପାଇଁ ଜୀବନ ଉତ୍ସର୍ଗ କରିଛନ୍ତି, ସେମାନଙ୍କର କୀର୍ତ୍ତି ଓ କାର୍ଯ୍ୟକଳାପ ସ୍ମରଣ କରି ସେଥିରୁ ପ୍ରେରଣା ଲାଭ କରିବା ଆମର ପରମ କର୍ତ୍ତବ୍ୟ । ଏଣୁକରି ବରପୁତ୍ରମାନଙ୍କର ଜୀବନୀ ଆଲୋଚନା ଅପରିହାର୍ଯ୍ୟ ।

ଦଣ୍ଡପାଣି ପଣ୍ଡାଙ୍କ ରଚିତ 'ଭାରତର ଏକଶହ କୃତି ସନ୍ତାନଙ୍କ ଜାତକ ଓ ଜୀବନୀ' ପୁସ୍ତକରେ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଲାଭ କରିଥିବା ଭାରତବର୍ଷର ବିଶିଷ୍ଟ ବ୍ୟକ୍ତିଙ୍କର ଜାତକ ଏବଂ ଜୀବନୀର ସଂକ୍ଷିପ୍ତ ଆଲୋଚନା ହୋଇଛି ।

'ଜାତକ' ହେଉଛି ଜୀବନର ପ୍ରତିବିମ୍ବ । ଜାତକରେ କେଉଁ ଧରଣର ଅନୁକୂଳ ଗ୍ରହାବସ୍ଥାନ ଯୋଗୁଁ ପ୍ରତିଭାଧର ବ୍ୟକ୍ତିବାନେ ଜୀବନରେ କୃତିତ୍ୱ ହାସଲ କରିପାରିଲେ ତାହା ଆଲୋଚନା କଲେ ଜ୍ୟୋତିଷ ଶାସ୍ତ୍ର ପ୍ରତି ଲୋକଙ୍କର ଆସ୍ଥା ବୃଦ୍ଧି ପାଇବା ସାଙ୍ଗକୁ ଫଳିତ ଜ୍ୟୋତିଷ ପ୍ରମାଣିତ ହୋଇପାରିବ । ପୁସ୍ତକଟିରେ ଭଗବାନ ଶ୍ରୀରାମ, ଶ୍ରୀକୃଷ୍ଣଙ୍କଠୁ ଆରମ୍ଭ କରି ଶ୍ରୀ ଚୈତନ୍ୟ, ଗୁରୁ ନାନକ, ତୁଳସୀ ଦାସ, ମହାତ୍ମା ଗାନ୍ଧୀ, ଶ୍ରୀ ଅରବିନ୍ଦ, ବିବେକାନନ୍ଦ, ସୁବାଷ ବୋଷ, ଏମ୍, ଏସ୍, ଶୁଭଲକ୍ଷ୍ମୀ, ଇନ୍ଦିରା ଗାନ୍ଧୀ, ସତ୍ୟଜିତ ରାୟ, ଅଟଳବିହାରୀ ବାଜପେୟୀ, ରାଜୀବ ଗାନ୍ଧୀ, ସଚିନ ତେନ୍ଦୁଲକର, ଐଶ୍ୱର୍ଯ୍ୟା ରାୟ ପ୍ରମୁଖ ୧୦୦ ଜଣ କୃତି ସନ୍ତାନଙ୍କ୍ ଜାତକ ଓ ଜୀବନୀର ସାମଞ୍ଜସ୍ୟ ଉପରେ ଆଲୋକପାତ ହୋଇଛି ।

**ଜ୍ୟୋତିଷ ବିଦ୍ୟା ପାଇଁ ପୁସ୍ତକଟି ଏକାନ୍ତ ଉପାଦେୟ ।**

**(୪) ସମ୍ବାଦ**, ତା ୨.୬.୨୦୦୨:- ଭାରତରେ ବିଭିନ୍ନ କ୍ଷେତ୍ରରେ ପ୍ରସିଦ୍ଧି ଅର୍ଜନ କରିଥିବା ୧୦୦ ଜଣ ବ୍ୟକ୍ତିଙ୍କ ଜାତକ ଓ ଜୀବନୀ ଏହି ପୁସ୍ତକରେ ରହିଛି । ୩୫୬ ପୃଷ୍ଠାର ଏହି ପୁସ୍ତକଟି ଫଳିତ ଜ୍ୟୋତିଷର ଏକ ଉଲ୍ଲେଖନୀୟ ପୁସ୍ତକ । ଶ୍ରୀରାମ, ଶ୍ରୀକୃଷ୍ଣ, ମହାବୀର ଜୈନ, ଗୌତମ ବୁଦ୍ଧ, ଶଙ୍କରାଚାର୍ଯ୍ୟ, ରାଜା ବିକ୍ରମାଦିତ୍ୟ, ଗୁରୁ ନାନକ, ଚୈତନ୍ୟ, ଆକବର, ଶିବାଜୀଙ୍କ ଠାରୁ ଆରମ୍ଭ କରି ସାଂପ୍ରତିକ ସମୟର ଅନେକ ରାଜନୈତିକ ବ୍ୟକ୍ତିତ୍ୱ, ସାହିତ୍ୟିକ, କ୍ରୀଡ଼ାବିତ୍, ବୈଜ୍ଞାନିକ, ସଂଗୀତଜ୍ଞ ଆଦିଙ୍କ ଜାତକ ଓ ଜୀବନୀ ଏଥିରେ ରହିଛି । ଭାରତର ବୈଦିକ ଯୁଗ, ପୁରାଣ ଯୁଗ, ବିଭିନ୍ନ ସଭ୍ୟତା, କେତେକ ଗୁରୁତ୍ୱ ପୂର୍ଣ୍ଣ ଯୁଦ୍ଧ, ଐତିହାସିକ ଯୁଗ, ଭାଷା, ବିଜ୍ଞାନ, ସମ୍ବିଧାନ, କେତେକ ଲୋକସଭା ନିର୍ବାଚନ, ବିଭିନ୍ନ ରାଜନୈତିକ ଦଳ ଆଦି ସଂପର୍କରେ ମଧ୍ୟ ଗଣନା କରି ଭବିଷ୍ୟବାଣୀ କରିଛନ୍ତି ଲେଖକ । ଜ୍ୟୋତିଷ ଶାସ୍ତ୍ରରେ ବିଶ୍ୱାସ କରୁଥିବା ପାଠକବର୍ଗଙ୍କ ପାଇଁ ଏହା ଏକ ପ୍ରାମାଣିକ ଗ୍ରନ୍ଥ । ଶ୍ରୀ ପଣ୍ଡା ଏହି ପୁସ୍ତକ ପାଇଁ ବହୁ ପରିଶ୍ରମ କରିଥିବାର ମନେହୁଏ । ଜ୍ୟୋତିଷ

ଶାସ୍ତ୍ର ଗଣନା ପ୍ରଧାନ ହୋଇଥିବା ବେଳେ ୧୦୦ଜଣ ବ୍ୟକ୍ତିଙ୍କର ତଥା ଅନ୍ୟାନ୍ୟ ସମୟ, ଦଳ ତଥା ଦେଶର ଜାତକ ଗଣନା କରିବା ଏକ କଷ୍ଟସାଧ୍ୟ ବ୍ୟାପାର ନିଶ୍ଚୟ । ଏହି ପରିପ୍ରେକ୍ଷୀରେ ଶ୍ରୀ ପଣ୍ଡା ଧନ୍ୟବାଦାର୍ହ ।

**(୪) ମନୋରମା,** ମଇ, ୨୦୦୨ :- 'ପ୍ରତିଭା' ପ୍ରତି ସମ୍ମାନ ପ୍ରତ୍ୟେକ ବ୍ୟକ୍ତି ଓ ଜାତିର କର୍ତ୍ତବ୍ୟ । ପ୍ରତିଭାର ସମ୍ମାନ ଦେଶ ଓ ଜାତିକୁ ଉନ୍ନତ କରେ । ସମୟର ସ୍ରୋତରେ କେତେ ପ୍ରତିଭା ପ୍ରକାଶ ପାଉଛି ଓ ଲୀନ ହେଉଛି । କିନ୍ତୁ କେତେକ କୃତବିଦ୍ ଚିରସ୍ମରଣୀୟ ହୋଇରହନ୍ତି । ଯେଉଁ ମହାନ ବ୍ୟକ୍ତି ଏ ଦେଶ ଓ ଜାତିର ସମୃଦ୍ଧି ପାଇଁ ଜୀବନ ଉତ୍ସର୍ଗ କରିଯାଇଛନ୍ତି, ସେମାନଙ୍କର କୀର୍ତ୍ତି ଓ କାର୍ଯ୍ୟକଳାପ ସ୍ମରଣ କରି ସେଥିରୁ ପ୍ରେରଣା ଲାଭ କରିବା ଆମର ପରମ କର୍ତ୍ତବ୍ୟ ।

ଦଣ୍ଡପାଣି ପଣ୍ଡାଙ୍କ ରଚିତ 'ଭାରତର ଏକ ଶହ କୃତି ସନ୍ତାନଙ୍କ ଜାତକ ଓ ଜୀବନୀ' ପୁସ୍ତକରେ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଲାଭ କରିଥିବା ଭାରତ ବର୍ଷର ବିଶିଷ୍ଟ ବ୍ୟକ୍ତିଙ୍କର ଜାତକ ସଂଗ୍ରହ କରି ତାଙ୍କର ଜୀବନୀ ସହିତ ଏହାର ସାମଞ୍ଜସ୍ୟ ସମ୍ପର୍କରେ ଆଲୋଚନା କରାଯାଇଛି ।

'ଜାତକ' ହେଉଛି ଜୀବନର ପ୍ରତିବିମ୍ବ । ଜାତକରେ କେଉଁ ଧରଣର ଅନୁକୂଳ ଗ୍ରହାବସ୍ଥାନ ଯୋଗୁଁ ପ୍ରତିଭାବାନ ବ୍ୟକ୍ତିମାନେ ଜୀବନରେ କୃତିତ୍ୱ ହାସଲ କରିପାରିଲେ ତାହା ଆଲୋଚନା କଲେ ଜ୍ୟୋତିଷ ଶାସ୍ତ୍ର ପ୍ରତି ଲୋକଙ୍କର ଆସ୍ଥା ବୃଦ୍ଧି ପାଇବା ସାଙ୍ଗକୁ ଫଳିତ ଜ୍ୟୋତିଷ ପ୍ରମାଣିତ ହୋଇପାରିବ । ପୁସ୍ତକଟିରେ ଭଗବାନ ଶ୍ରୀରାମ, ଶ୍ରୀକୃଷ୍ଣଙ୍କଠାରୁ ଆରମ୍ଭ କରି ଶ୍ରୀଚୈତନ୍ୟ, ଗୁରୁନାନକ, ତୁଳସୀ ଦାସ, ମହାତ୍ମା ଗାନ୍ଧୀ, ଶ୍ରୀ ଅରବିନ୍ଦ, ବିବେକା ନନ୍ଦ, ସୁବାଷ ବୋଷ, ଏମ୍.ଏସ. ଶୁଭଲକ୍ଷ୍ମୀ, ଇନ୍ଦିରା ଗାନ୍ଧୀ, ସତ୍ୟଜିତ୍ ରାୟ, ଅଟଳବିହାରୀ ବାଜପେୟୀ, ରାଜୀବ ଗାନ୍ଧୀ, ସଚିତ ତେନ୍ଦୁଲକର, ଐଶ୍ୱର୍ଯ୍ୟା ରାୟ ପ୍ରମୁଖ ୧୦୦ ଜଣ କୃତି ସନ୍ତାନଙ୍କ ଜାତକ ଓ ଜୀବନୀର ସାମଞ୍ଜସ୍ୟ ଉପରେ ଆଲୋକପାତ ହୋଇଛି । ବର୍ତ୍ତମାନ ବିଭିନ୍ନ ଶିକ୍ଷାଅନୁଷ୍ଠାନରେ ଓ ଅନ୍ୟାନ୍ୟ ସଂସ୍ଥା ମାଧ୍ୟମରେ ଜ୍ୟୋତିଷ ଶିକ୍ଷାର ପ୍ରଚଳନ ହେଲାଣି । ତେଣୁ ଦଣ୍ଡପାଣି ପଣ୍ଡାଙ୍କ ଏହି ପୁସ୍ତକଟି ଉକ୍ତ ବିଦ୍ୟାର୍ଥୀମାନଙ୍କ ସହାୟତାରେ ଆସିପାରିବ ।

ଏହି ପୁସ୍ତକ ପ୍ରକାଶନ ପୂର୍ବରୁ ଶ୍ରୀ ପଣ୍ଡାଙ୍କ ଅନ୍ୟଏକ ପୁସ୍ତକ ଓଡ଼ିଶାର ଶହେଜଣ କୃତି ସନ୍ତାନଙ୍କ ଜାତକ ଓ ଜୀବନୀ ଉପରେ ପ୍ରକାଶ ପାଇସାରିଛି ।

(୬) ସପ୍ତାହିକ, ସମୟ, ତା ୨୦.୪.୨୦୦୨:- ଆର୍ଯ୍ୟଭୂମି ଭାରତରେ ମହାପୁରୁଷ ଓ ଯୋଗଜନ୍ମା ପୁରୁଷମାନଙ୍କର ଦୃଷ୍ଟାନ୍ତ ବିରଳ ନିହେଁ । ସେମାନଙ୍କ ମଧ୍ୟରୁ ମାତ୍ର ଶହେ ଜଣଙ୍କୁ ଚୟନ କରିବା ହୁଏତ ସବୁଠାରୁ ଏକ କଷ୍ଟ କାର୍ଯ୍ୟ । ତଥାପି ପୁରାଣ ଯୁଗରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ହଜାର ହଜାର ବର୍ଷର ଇତିହାସ ପୃଷ୍ଠା ମଧ୍ୟରୁ ଲେଖକ ତଥା ଜ୍ୟୋତିଷୀ ଶ୍ରୀଯୁକ୍ତ ପଣ୍ଡା ଏପରି ଶହେ ଜଣ ଯୋଗ୍ୟ ବ୍ୟକ୍ତିଙ୍କୁ ଚୟନ କରି ସେମାନଙ୍କ ଜାତକ ତଥା ଜୀବନୀ ସଂପର୍କରେ ତର୍ଜମା କରିଛନ୍ତି, ଯେଉଁଥିରେ କାହାର ଦ୍ୱିମତ ଥାଇ ନ ପାରେ । ଭଗବାନ ଶ୍ରୀରାମ, ଶ୍ରୀକୃଷ୍ଣଙ୍କ ଠାରୁ ଆରମ୍ଭ କରି ମହାବୀର ଜୈନ ଓ ଗୌତମ ବୁଦ୍ଧଙ୍କ ପର୍ଯ୍ୟନ୍ତ ଏବଂ ଆଦି ଶଙ୍କରଙ୍କ ଠାରୁ ଆରମ୍ଭ କରି ସଚିନ ତେନ୍ଦୁଲକର ଓ ଐଶ୍ୱର୍ଯ୍ୟା ରାୟଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଏଥିରେ ସ୍ଥାନୀତ କରିପାରିଛନ୍ତି ।

ଜ୍ୟୋତିଷ ଶାସ୍ତ୍ର ପ୍ରତି କାହାର ବିଶ୍ୱାସ ଥାଉ ଅବା ନ ଥାଉ ଏହା ଯେ ବିଜ୍ଞାନସମ୍ମତ ତାହା ଆଧୁନିକ ବିଜ୍ଞାନୀମାନେ ମଧ୍ୟ ବିଶ୍ୱାସ କରନ୍ତି । ମଣିଷ ଉପରେ ଗ୍ରହ ନକ୍ଷତ୍ରମାନଙ୍କ ପ୍ରଭାବ ରହିଛି । ତେଣୁ ଆଲୋଚିତ ପୁସ୍ତକରେ ସ୍ଥାନୀତ ବିଶିଷ୍ଟ ବ୍ୟକ୍ତିମାନଙ୍କ ଜୀବନୀ ଓ ଜାତକ ସମ୍ବନ୍ଧରେ ଆଲୋଚନା କଲାବେଳେ ଶ୍ରୀଯୁକ୍ତ ପଣ୍ଡା ସେସବୁ ବୈଜ୍ଞାନିକ ପ୍ରମାଣ ସହ ବିଶ୍ଳେଷଣ କରିଛନ୍ତି । ଗ୍ରହ-ନକ୍ଷତ୍ରମାନଙ୍କ ପ୍ରଭାବ ବେଳେ ବେଳେ ମନୁଷ୍ୟକୁ ସମ୍ମାନ, ପ୍ରଶଂସା, ଭୋଗ ବିଳାସ, ଐ ଶ୍ୱର୍ଯ୍ୟ ତଥା ପ୍ରାଚୁର୍ଯ୍ୟର ଅଧିକାରୀ କରାଇବା ବେଳେ କେତେବେଳେ ପୁଣି ଅଶେଷ ପୀଡ଼ା, କ୍ଳେଶ, ନିନ୍ଦା, ଅପଯଶର ସମ୍ମୁଖୀନ କରାଉଥାଏ । ବିଶ୍ୱରେ ଏପରି କୌଣସି ବ୍ୟକ୍ତି ଜନ୍ମ ହୋଇ ନାହାନ୍ତି, ଯିଏ ନିଜ ଜୀବଦ୍ଦଶା ମଧ୍ୟରେ ଏକ ପ୍ରକାର ଭାଗ୍ୟ ଭୋଗ କରିଛନ୍ତି । ନିଜ ଜାଣତରେ ହେଉ ଅଥବା ଅଜାଣତରେ ହେଉ, ସମସ୍ତଙ୍କ ଭାଗ୍ୟରେ ସମୟକ୍ରମେ ପରିବର୍ତ୍ତନ ଅବଶ୍ୟ ଘଟିଛି । ଶ୍ରୀ ପଣ୍ଡା ତାଙ୍କ ପୁସ୍ତକରେ ଯେହେତୁ କେବଳ କୃତୀ ସନ୍ତାନମାନଙ୍କ ବିଷୟରେ ଆଲୋଚନା କରିଛନ୍ତି, ସେମାନଙ୍କ ଜୀବନରେ ଘଟିଥିବା କେତେକ ବିଶେଷ ଘଟଣାବଳୀ ସାଧାରଣ ପାଠକଙ୍କୁ ପ୍ରେରଣା ଯୋଗାଇବାରେ ସହାୟକ ହେବ ।

ଏତଦ୍‌ଭିନ୍ନ ଲେଖକ ଶ୍ରୀ ପଣ୍ଡା ପୁସ୍ତକଟିର ବିଭିନ୍ନ ଭାଗରେ ଭାରତର ଅନେକ ବିଶିଷ୍ଟ ଘଟଣାବଳୀ ସଂପର୍କରେ ଆଲୋଚନା କରିଛନ୍ତି । ବୈଦିକ ଓ ପୁରାଣ ଯୁଗ ଠାରୁ ଆରମ୍ଭ କରି ଆର୍ଯ୍ୟ ସଭ୍ୟତା, ମହାଭାରତ ଯୁଦ୍ଧ ପ୍ରମୁଖ ଧର୍ମର ଉତ୍‌ଥାନ ଓ ପ୍ରସାର, ବୈଦେଶିକ ଶକ୍ତିମାନଙ୍କ ଭାରତ ଅକ୍ତିଆର, କଂଗ୍ରେସ ଓ ସ୍ୱାଧୀନତା ଆନ୍ଦୋଳନ, ଭାରତୀୟ କଂଗ୍ରେସ ଏବଂ ଅନ୍ୟାନ୍ୟ ପ୍ରମୁଖ ରାଜନୈତିକ ଦଳମାନଙ୍କ ଉତ୍‌ଥାନ ଆଲୋଚିତ ଗ୍ରନ୍ଥଟିର ଅନ୍ୟତମ ବୈଶିଷ୍ଟ୍ୟ । ଭାରତୀୟ ସମାଜର ବିଭିନ୍ନ ଦିଗ ଯଥା : ସାମାଜିକ, ଅର୍ଥନୈତିକ ତଥା ଧର୍ମୀୟ

ଧାରାରୁ ଶୃଙ୍ଖଳିତ ଭାବେ ଚୟନ କରାଯାଇଥିବା ଏହିସବୁ ବିଶିଷ୍ଟ ବ୍ୟକ୍ତିମାନେ ଦେଶର ଭିନ୍ନ ଭିନ୍ନ ସମୟର ପ୍ରତିନିଧିତ୍ୱ କରନ୍ତି । ସେମାନଙ୍କ ଜୀବନୀ ଓ ଭାରତୀୟ ସମାଜ ପ୍ରତି ଥିବା ଅବଦାନ ଭାରତର ଚଳନ୍ତି ଇତିହାସର ନିଖୁଣ ନମୁନା କହିଲେ ଅତ୍ୟୁକ୍ତି ହେବନାହିଁ । **ଏପରି ଏକ ଉପାଦେୟ ପୁସ୍ତକ ରଚନା କରିଥିବାରୁ ଲେଖକ ଶ୍ରୀ ପଣ୍ଡା ବାସ୍ତବିକ ଅଭିନନ୍ଦନୀୟ ।**

**(୭) ଶତାବ୍ଦୀ,** ତା ୩୦.୪.୨୦୦୨ :- କେଉଁ ଲଗ୍ନରେ ଜାତ ହୋଇଥିବାରୁ ଝାନ୍ସୀ ରାଣୀ ଲକ୍ଷ୍ମୀବାଇ ବୀରାଙ୍ଗନା ହେଲେ ? କେଉଁ ଗ୍ରହଯୋଗ ରାମକୃଷ୍ଣଙ୍କୁ କଲା ପରମହଂସ ? କେଉଁ ରାଶି, କେଉଁ କାରକ ଗ୍ରହ ଜଗଦୀଶ ଚନ୍ଦ୍ର ବୋଷଙ୍କୁ ବୈଜ୍ଞାନିକ କଲା, ବାଜପେୟୀଙ୍କୁ କଲା ପ୍ରଧାନମନ୍ତ୍ରୀ ଏବଂ ଐଶ୍ୱର୍ଯ୍ୟା ରାୟ କେଉଁ ଲଗ୍ନାଧିପତି ଯୋଗୁଁ କଳାନିପୁଣା, ସୁନ୍ଦରୀ ଓ ସୌଭାଗ୍ୟବତୀ ହେଲେ ? ଏସବୁର ଉତ୍ତର ପାଇବାକୁ ହେଲେ ପଢ଼ିବାକୁ ପଡ଼ିବ ଜ୍ୟୋତିର୍ବିଦ୍ୟା ବାଚସ୍ପତି ଦଣ୍ଡପାଣି ପଣ୍ଡାଙ୍କ ପୁସ୍ତକ " ଭାରତରଏକ ଶହ କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ" ।

ଓଡ଼ିଶାର ଶହେଜଣ କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ ପୁସ୍ତକ ପ୍ରଣୟନ କରିବା ପରେ ସେହି କ୍ରମରେ ଶ୍ରୀ ପଣ୍ଡା ଏ ପୁସ୍ତକଟି ପ୍ରସ୍ତୁତ କରିଛନ୍ତି । ପୁସ୍ତକରେ ସ୍ଥାନିତ ପ୍ରତିଭାବାନ ବ୍ୟକ୍ତିଙ୍କର ଖ୍ୟାତି ପଛରେ ଥିବା ଜ୍ୟୋତିଷ ଭିତ୍ତିର ଏହି ପରିଚୟ ପାଠକମାନଙ୍କ ମନରେ ବୈଦିକ ପ୍ରଜ୍ଞାପ୍ରତି ଆଦର ଓ ଆସ୍ଥା ପ୍ରକଟ କରିବ ବୋଲି ମଧ ସେ ଆଶା କରିଛନ୍ତି ।

ଉଲ୍ଲେଖଯୋଗ୍ୟ ଯେ ଭାରତବର୍ଷର ଶହେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ଜାତକ ଓ ଜୀବନୀ ବ୍ୟତୀତ ଏହି ପୁସ୍ତକରେ ମଧ ରହିଛି ବୈଦିକଯୁଗ, ପୁରାଣ ଯୁଗ, ଆର୍ଯ୍ୟ ସଭ୍ୟତା, ମହାଭାରତ ଯୁଦ୍ଧ, ମୌର୍ଯ୍ୟ ଓ ଗୁପ୍ତ ଯୁଗ, ହିନ୍ଦୁ, ବୌଦ୍ଧ, ଜୈନ, ଶିଖ ଧର୍ମ ଓ ଶିଖ, ରାଜପୁତ ଓ ମରହଟ୍ଟା ଆଦି ଜାତିର ଅଭ୍ୟୁତ୍ଥାନ ଏବଂ ମୋଗଲ ଓ ବ୍ରିଟିଶ ଶାସନର ଉତ୍ଥାନ ପତନ,ସ୍ୱାଧୀନତା ଆନ୍ଦୋଳନ, ସମ୍ବିଧାନ ପ୍ରଣୟନ, ଲୋକସଭା ନିର୍ବାଚନ ଆଦି ବିଭିନ୍ନ ବିଷୟରେ ସଂକ୍ଷିପ୍ତ ଆଲୋଚନା ।

**ପୁସ୍ତକଟି ଉଭୟ ସାଧାରଣ ପାଠକ ଓ ଜ୍ୟୋତିଷ ବିଦ୍ୟାର ଶିକ୍ଷାର୍ଥୀ ଉଭୟଙ୍କ ପାଇଁ ଅବଶ୍ୟ ପଠନୀୟ ।**

**(୮) ଅନୁପମ ଭାରତ,** ତା ୨.୬.୨୦୦୨ :- ସଂପ୍ରତି ନିଜ ଉଦ୍ୟମରେ ପ୍ରକାଶିତ ଜ୍ୟୋତିର୍ବିଦ୍ ଦଣ୍ଡପାଣି ପଣ୍ଡାଙ୍କର ଭାରତର ଏକ ଶହ କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ ପୁସ୍ତକଟିରେ ଦେଶର ଶତ ସଂଖ୍ୟକ ସ୍ୱନାମଧନ୍ୟ ନେତା, ବିପ୍ଳବୀ, ଧର୍ମଗୁରୁ,

ବୈଜ୍ଞାନିକ, କଳାକାର, ସାହିତ୍ୟିକ ଓ କ୍ରିଡ଼ାବିତ୍‌ଙ୍କର ଜାତକ ଓ ଜୀବନୀ କେବଳ ଆଲୋଚିତ ହୋଇନାହିଁ, ତଦୁପରି ଏଥିରେ ସମକାଳୀନ ଘଟଣାଚକ୍ର ଉଦ୍ଘାଟନ କ୍ରମେ ଇତିହାସର ଅବିସ୍ମରଣୀୟ ପରିଚ୍ଛେଦ କେତୋଟି ଉନ୍ମୋଚିତ ହୋଇଛି । ଘଜନୀ, ଘୋରୀ, ଖିଲଜୀ, ତୋଗଲକ୍, ଲୋଦୀ ବଂଶୀୟ ଶାସନ କାଳରେ ୮ମ ଶତାବ୍ଦୀରୁ ୧୫ଶ ଶତାବ୍ଦୀ ପର୍ଯ୍ୟନ୍ତ କିଭଳି ଅକଥନୀୟ ଅତ୍ୟାଚାର ଓ ନରସଂହାର ଚାଲିଥିଲା, ତା'ର ସ୍ପଷ୍ଟ ସୂଚନା ଲେଖକ ରାଣା ପ୍ରତାପ, ଆକବର ଓ ଚନ୍ଦ୍ରଶେଖର ସରସ୍ୱତୀଙ୍କ ଜୀବନାଲୋଚନା ଅବସରରେ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ହିନ୍ଦୁଧର୍ମର ଭବିଷ୍ୟତ ବିପନ୍ନ ନ ହେଉ ସେଥିଲାଗି ମଧ୍ୟ ଚେତାବନୀ ଦେଇଛନ୍ତି । ତାଙ୍କ ଭାଷାରେ ଭାରତରେ ୮୫ ପ୍ରତିଶତ ହିନ୍ଦୁ ଥିଲେ ସୁଦ୍ଧା ଆମର ଶାସକ ଗୋଷ୍ଠୀ ହିନ୍ଦୁଧର୍ମକୁ ପ୍ରକାଶ୍ୟରେ ସମର୍ଥନ କରିବା, ହିନ୍ଦୁଧର୍ମର ଉନ୍ନତି କରିବା ଚାହାଁନ୍ତି ନାହିଁ । ଭୋଟ ରାଜନୀତୀ ଆମ ଦେଶର ଧର୍ମକୁ ନଷ୍ଟ କରିଛି । କେତେକ ବ୍ୟକ୍ତିଙ୍କର ମତ ଯେ ଧର୍ମର ଗ୍ଲାନି ହେଲେ ଭଗବାନ ଅବତାର ଗ୍ରହଣ କରି ଧର୍ମର ରକ୍ଷା କରିବେ, ତେବେ ଆମର କ'ଣ କିଛି କର୍ତ୍ତବ୍ୟ ନାହିଁ ? ଆଧୁନିକ ପାଶ୍ଚାତ୍ୟ ଶିକ୍ଷିତ ହିନ୍ଦୁସମାଜ ନିଜର ଧର୍ମ ପ୍ରତି ସଚେତନ ନୁହଁନ୍ତି । ହିନ୍ଦୁଧର୍ମର ମହନୀୟତା ପ୍ରତି ସେମାନେ ଅଜ୍ଞ । ଭାରତୀୟ ସଂସ୍କୃତି ପ୍ରତି ତାଙ୍କର ଶ୍ରଦ୍ଧା ନାହିଁ । ଏହାବ୍ୟତୀତ ଜାତୀୟତା ପୂର୍ଣ୍ଣଜାଗରଣ ଘଟାଇବା କ୍ଷେତ୍ରରେ ରାମକୃଷ୍ଣ ପରମହଂସ, ବିବେକାନନ୍ଦ, ବଙ୍କିମଚନ୍ଦ୍ର, ରବିନ୍ଦ୍ରନାଥ, ମହାତ୍ମା ଗାନ୍ଧି, ଅରବିନ୍ଦ ପ୍ରମୁଖ ଯୋଗଜନ୍ମାଙ୍କ ଜାତକ, ଜୀବନୀ ଓ ଅବଦାନର ସବିଶେଷ ବିଶ୍ଳେଷଣ ପ୍ରଦାନ କରାଯାଇ ଥିବାରୁ ଏହି ଗ୍ରନ୍ଥକୁ ଆମ ଇତିହାସରେ ଏକ ସ୍ମରଣୀୟ ଅଧ୍ୟାୟ ରୂପେ ମଧ୍ୟ ଗ୍ରହଣ କରାଯାଇ ପାରିବ ।

ଉକ୍ତ ପୃଷ୍ଠଭୂମିରେ ସୁଭାଷ ଚନ୍ଦ୍ର ବୋଷ,ଶ୍ୟାମା ପ୍ରସାଦ ମୁଖାର୍ଜୀ, ଜୟପ୍ରକାଶ ନାରାୟଣ, ରାଜ ଗୋପାଳଚାରୀ, କେଶବ ରାଓ ହେଡ଼ଗେୱାର, ବଲ୍ଲଭ ଭାଇପଟେଲ୍ ପ୍ରମୁଖ ରାଜନେତା ତଥା ଶଙ୍କରାଚାର୍ଯ୍ୟ, ରାମାନୁଜ, ଶିବାନନ୍ଦ, ଶ୍ରୀଚୈତନ୍ୟ, ତୁଳସୀଦାସ, ଭକ୍ତ ବେଦାନ୍ତ ସ୍ୱାମୀ ପ୍ରମୁଖ ଭକ୍ତ ତଥା ଧର୍ମଗୁରୁଙ୍କର ଜୀବନ ଚର୍ଯ୍ୟା ଓ କୋଷ୍ଠୀ ବିଚାର ଦ୍ୱାରା ଆମର ସମାଜ, ରାଜନୀତି ଓ ଧର୍ମାଦର୍ଶ ସମ୍ବନ୍ଧୀୟ ବିକ୍ଷିପ୍ତ ଚେତନା ଯେ ସୁନିୟନ୍ତ୍ରିତ ହୋଇ ପାରିବ, ଏହା ନିଃସନ୍ଦେହ । କେବଳ ଏତିକି ନୁହେଁ, ବୈଜ୍ଞାନିକ ଦିଗରୁ ମଧ୍ୟ ଏହି କୃତିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସାର୍ ଜଗଦୀଶ ବୋଷ, ସି.ଭି. ରମଣ, ହରଗୋବିନ୍ଦ ଖୁରାନା, ବିଶ୍ୱେଶ୍ୱରେୟା, ପ୍ରଫୁଲ୍ଲ ଚନ୍ଦ୍ର ରାୟ, ମେଘନାଦ ଶାହାଙ୍କ ଭଳି ମନିଷୀ ଆଧୁନିକ ଭାରତରେ କେବଳ ସୁନାମ ଅର୍ଜନ କରିନାହାଁନ୍ତି, ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀରେ ମହର୍ଷି କଣାଦ ପରମାଣୁ ଜ୍ଞାନ କୌଶଳର ସୂଚନା ଦେଇ ଏବଂ ମହର୍ଷି ଭରଦ୍ୱାଜଙ୍କ ଯନ୍ତ୍ରବିଜ୍ଞାନ ଗ୍ରନ୍ଥରେ କ୍ଷେପଣାସ୍ତ୍ର ପ୍ରୟୋଗ କୌଶଳ ଚର୍ଚ୍ଚା କରି ପୃଥିବୀବାସୀଙ୍କୁ କିଭଳି ନୂତନ ଦିଗ୍‌ଦର୍ଶନ ଦେଇଯାଇଛନ୍ତି ,

ସେ ବିଷୟରେ ମଧ୍ୟ ଲେଖକ ଆଲୋଚନା ପ୍ରସଙ୍ଗରେ ଉପସ୍ଥାପନା କରିଛନ୍ତି । ପୁସ୍ତକଟିରେ ଆମ ସମାଜର ସମସ୍ତ କର୍ମ କ୍ଷେତ୍ରରେ ସାର୍ଥକତା ଅର୍ଜନ କରିଥିବା ଶହେ ଜଣ ବ୍ୟକ୍ତିବିଶେଷଙ୍କର ଜାତକ ଆଲୋଚନା ମୁଖ୍ୟ ବିଷୟ । ତଥାପି, ବାବରୀ ମସ୍‌ଜିଦ ଭାଙ୍ଗିବା ପାଇଁ ତତ୍କାଳୀନ ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ରାଶିଚକ୍ର କେତେଦୂର ଦାୟୀ, ଇନ୍ଦିରାଙ୍କ ବୈଧବ୍ୟ ଓ ଅପମୃତ୍ୟୁ ମୂଳରେ କି ପ୍ରକାର ଗ୍ରହ ପ୍ରଭାବ ନିହିତ, ବାଜପେୟୀ କାହିଁକି ଅବିବାହିତ, ଚନ୍ଦ୍ରସ୍ୱାମୀ ଓ ରଜନୀଶ ଧର୍ମ ସହ ରାଜନୀତି ଓ ଯୌନବିକାଂସକୁ ଯୋଡ଼ିବା କେଉଁ ଗ୍ରହଙ୍କ ଯୋଗୁଁ ସମ୍ଭବ ହୋଇଛି, ସେସବୁ ଏଥିରେ କ୍ଳୁପ୍ତରେ ଆଲୋଚିତ ହୋଇଛି ।

ସାଧାରଣ ମୁଦ୍ରଣ ତ୍ରୁଟିକୁ ବାଦ୍ ଦେଲେ ଏ ପୁସ୍ତକଟି ଜ୍ୟୋତିଷ ଗବେଷକ ତଥା ସଚେତନଶୀଳ ପାଠକଙ୍କ ପକ୍ଷେ ନିତାନ୍ତ ପଠନୀୟ ।

**(୯) ଜୀବନରଂଗ**, ଫେବୃଆରୀ-ମାର୍ଚ୍ଚ,୨୦୦୨:- ୩୭୨ ପୃଷ୍ଠା ବିଶିଷ୍ଟ ଏକଶହକୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ ପୁସ୍ତକ ପ୍ରେମୀମାନଙ୍କ ପାଇଁ ଅତୀବ ସଂଗ୍ରହଣୀୟ ଅନବଦ୍ୟ ସଂକଳନ । ସଂପ୍ରତି ଶିକ୍ଷାନୁଷ୍ଠାନମାନଙ୍କରେ ଜ୍ୟୋତିଷ ଶିକ୍ଷାକୁ ଅଧିକ ପ୍ରାଧାନ୍ୟ ଦିଆଯିବ ବୋଲି ସୂଚନା ପ୍ରକାଶ ପାଇଛି ।

ଏହି ସଂକଳନରେ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କର ଜାତକ ସଂଗ୍ରହ କରି ତାଙ୍କର ଜୀବନୀ ସହିତ ଏହାର ସାମଞ୍ଜସ୍ୟ ଏହି ପୁସ୍ତକରେ ଆଲୋଚନା କରାଯାଇଛି । ସାଧୁସନ୍ଥଙ୍କ ଠାରୁ ଆରମ୍ଭ କରି ଶିକ୍ଷାବିତ୍, ସାହିତ୍ୟିକ, ଶାସକ, ପ୍ରଶାସକ, ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ଚିକିତ୍ସକ, ବୈଜ୍ଞାନିକ, କଳାକାର, ଚିତ୍ରତାରକା, କ୍ରୀଡ଼ାବିତ୍ ପ୍ରଭୃତିକୃତି ସନ୍ତାନମାନଙ୍କ ଜୀବନୀ ଶ୍ରୀ ପଣ୍ଡା ଏହି ପୁସ୍ତକରେ ଉଲ୍ଲେଖ କରିଛନ୍ତି ।

ଏଭଳି ପୁସ୍ତକ ପ୍ରସ୍ତୁତ କରିବା ପାଇଁ ଶ୍ରୀ ପଣ୍ଡା ଯଥେଷ୍ଟ ଗବେଷଣା ଓ ପରିଶ୍ରମ କରିଛନ୍ତି । ପୁସ୍ତକଟି ସବୁ ଶ୍ରେଣୀର ପାଠକମାନଙ୍କ ଦ୍ୱାରା ଆଦୃତ ହେବ । ଏଭଳି ଏକ ସଂକଳନ ରାଜା ରାମମୋହନ ଲାଇବ୍ରେରୀର ଫାଉଣ୍ଡେସନ ଦ୍ୱାରା ସ୍ୱୀକୃତି ପାଇଲେ ରାଜ୍ୟର ବିଭିନ୍ନ ଲାଇବ୍ରେରୀରେ ସ୍ଥାନିତ ହୋଇ ଗ୍ରାମାଞ୍ଚଳ ପାଠକମାନଙ୍କ ଶ୍ରଦ୍ଧା ଭାଜନ ହୋଇ ପାରନ୍ତା ।

**(୧୦) ଦୈନିକ ଆଶା**, ରବିବାର, ୨୩.୦୬.୨୦୦୨:- ସଂପ୍ରତି ନିଜ ଉଦ୍ୟମରେ ପ୍ରକାଶିତ ଜ୍ୟୋତିର୍ବିଦ୍ ଦଣ୍ଡପାଣି ପଣ୍ଡାଙ୍କର " ଭାରତର ଏକ ଶହ କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ" ପୁସ୍ତକଟିରେ ଦେଶରେ ଶତ ସଂଖ୍ୟକ ସ୍ୱନାମଧନ୍ୟ ନେତା, ବିପ୍ଳବୀ, ଧର୍ମଗୁରୁ, ବୈଜ୍ଞାନିକ, କଳାକାର, ସାହିତ୍ୟିକ ଓ କ୍ରୀଡ଼ାବିଦ୍‌ଙ୍କର ଜାତକ ଓ ଜୀବନ

କେବଳ ଆଲୋଚିତ ହୋଇନାହିଁ, ତଦୁପରି ଏଥିରେ ସମକାଳୀନ ଘଟଣାଚକ୍ର ଉଦ୍ଘାଟନ କ୍ରମେ ଇତିହାସର ଅବିସ୍ମରଣୀୟ ପରିଚ୍ଛେଦ କେତୋଟି ଉନ୍ମୋଚିତ ହୋଇଛି । ଘଜନୀ, ଘୋରୀ, ଖିଲିଜୀ, ତୋଗଲକ ଓ ଲୋଦୀ ବଂଶୀୟ ଶାସନ କାଳରେ ୮ମ ଶତାବ୍ଦୀରୁ ୧୫ଶ ଶତାବ୍ଦୀ ପର୍ଯ୍ୟନ୍ତ କିଭଳି ଅକଥନୀୟ ଅତ୍ୟାଚାର ଓ ନରସଂହାର ଚାଲିଥିଲା, ତାର ସ୍ପଷ୍ଟ ସୂଚନା ଲେଖକ ରାଣା ପ୍ରତାପ, ଆକବର ଓ ଚନ୍ଦ୍ରଶେଖର ସରସ୍ୱତୀଙ୍କ ଜୀବନାଲୋଚନା ଅବସରରେ ଉପସ୍ଥାପନା କରିବା ସଙ୍ଗେ ସଙ୍ଗେ ହିନ୍ଦୁଧର୍ମର ଭବିଷ୍ୟତ ବିପନ୍ନ ନ ହେଉ, ସେଥି ଲାଗି ମଧ୍ୟ ଚେତାବନୀ ଦେଇଛନ୍ତି । **ତାଙ୍କ ଭାଷାରେ ଭାରତର ୮୫ ପ୍ରତିଶତ ହିନ୍ଦୁ ଥିଲେ ସୁଦ୍ଧା ଆମର ଶାସକ ଗୋଷ୍ଠୀ ହିନ୍ଦୁ ଧର୍ମକୁ ପ୍ରକାଶ୍ୟରେ ସମର୍ଥନ କରିବା, ହିନ୍ଦୁଧର୍ମର ଅବମାନନା ପ୍ରତି ପଦକ୍ଷପ ନେବା ଏବଂ ହିନ୍ଦୁ ଧର୍ମର ଉନ୍ନତି କରିବା ଚାହାନ୍ତି ନାହିଁ । ଭୋଟ ରାଜନୀତି ଆମ ଦେଶର ଧର୍ମକୁ ନଷ୍ଟ କରିଛି ।** କେତେକ ବ୍ୟକ୍ତିଙ୍କର ମତ ଯେ ଧର୍ମର ଗ୍ଲାନି ଘଟିଲେ ଭଗବାନ ଅବତାର ଗ୍ରହଣ କରି ଧର୍ମର ରକ୍ଷା କରିବେ, ତେବେ ଆମର କ'ଣ କିଛି କର୍ତ୍ତବ୍ୟ ନାହିଁ ? ଆଧୁନିକ ପାଶ୍ଚାତ୍ୟ ଶିକ୍ଷିତ ହିନ୍ଦୁସମାଜ ନିଜର ଧର୍ମପ୍ରତି ସଚେତନ ନୁହଁନ୍ତି । ହିନ୍ଦୁଧର୍ମର ମହନୀୟତା ପ୍ରତି ସେମାନେ ଅଜ୍ଞ । ଭାରତୀୟ ସଂସ୍କୃତି ପ୍ରତି ତାଙ୍କର ଶ୍ରଦ୍ଧାନାହିଁ ।

ଏହାବ୍ୟତୀତ, ଜାତୀୟତାର ପୁନର୍ଜାଗରଣ ଘଟାଇବା କ୍ଷେତ୍ରରେ ରାମକୃଷ୍ଣ ପରମହଂସ, ବିବେକାନନ୍ଦ, ବଙ୍କିମଚନ୍ଦ୍ର, ରବୀନ୍ଦ୍ର ନାଥ, ମହାତ୍ମା ଗାନ୍ଧୀ, ଅରବିନ୍ଦ ପ୍ରମୁଖ ଯୋଗଜନ୍ମାଙ୍କ ଜାତକ, ଜୀବନୀ ଓ ଅବଦାନର ସବିଶେଷ ବିଶ୍ଳେଷଣ ପ୍ରଦାନ କରାଯାଇଥିବାରୁ ଏହି ଗ୍ରନ୍ଥକୁ ଆମ ଇତିହାସରେ ଏକ ସ୍ମରଣୀୟ ଅଧ୍ୟାୟ ରୂପେ ମଧ୍ୟ ଗ୍ରହଣ କରାଯାଇପାରିବ ।

ଉକ୍ତ ପୃଷ୍ଠଭୂମିରେ ସୁବାଷ ଚନ୍ଦ୍ର ବୋଷ, ଶ୍ୟାମାପ୍ରସାଦ ମୁଖାର୍ଜୀ, ଜୟପ୍ରକାଶ ନାରାୟଣ, ରାଜଗୋପାଳଚାରୀ, କେଶବ ରାଓ ହେଡ଼ଗେୱାର, ବଲ୍ଲଭ ଭାଇ ପଟେଲ୍ ପ୍ରମୁଖ ରାଜନେତା ତଥା ଶଙ୍କରାଚାର୍ଯ୍ୟ, ରାମାନୁଜ, ଶିବାନନ୍ଦ, ଶ୍ରୀଚୈତନ୍ୟ, ତୁଳସୀଦାସ, ଭକ୍ତି ବେଦାନ୍ତ ସ୍ୱାମୀ ପ୍ରମୁଖ ଭକ୍ତ ତଥା ଧର୍ମଗୁରୁଙ୍କର ଜୀବନ ଚର୍ଯ୍ୟା ଓ କୋଷ୍ଠୀର ବିଚାର ଦ୍ୱାରା ଆମର ସମାଜ, ରାଜନୀତି ଓ ଧର୍ମାଦର୍ଶସମ୍ବନ୍ଧୀୟ ବିକ୍ଷିପ୍ତ ଚେତନା ଯେ ସୁନିୟନ୍ତ୍ରିତ ହୋଇ ପାରିବ, ଏହା ନିଃସନ୍ଦେହ । କେବଳ ଏତିକି ନୁହେଁ, ବୈଜ୍ଞାନିକ ଦିଗରୁ ମଧ୍ୟ ଏହି କୃତିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସାର୍ ଜଗଦୀଷ ବୋଷ, ସି.ଭି.ରମଣ, ହରଗୋବିନ୍ଦ ଖୁରାନା, ବିଶ୍ୱେଶ୍ୱରେୟା, ପ୍ରଫୁଲ୍ଲ ଚନ୍ଦ୍ର ରାୟ, ମେଘନାଦ ଶାହା ମନୀଷୀ ଭଳି ଆଧୁନିକ ଭାରତରେ କେବଳ ସୁନାଭ ଅର୍ଜନ କରିନାହାଁନ୍ତି । ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀରେ ମହର୍ଷି କଣାଦ ପରମାଣୁ ଜ୍ଞାନ କୌଶଳର ସୂଚନା ଦେଇ ଏବଂ ମହର୍ଷି ଭରଦ୍ୱାଜଙ୍କ 'ଯନ୍ତ୍ରବିଜ୍ଞାନ' ଗ୍ରନ୍ଥରେ କ୍ଷେପଣାସ୍ତ୍ର

ପ୍ରୟୋଗ କୌଶଳ ଚର୍ଚ୍ଚା କରି ପୃଥିବୀବାସୀଙ୍କୁ କିଭଳି ନୂତନ ଦିଗ୍‌ଦର୍ଶନ ଦେଇଯାଇଛନ୍ତି, ସେ ବିଷୟ ମଧ୍ୟ ଲେଖକ ଆଲୋଚନା ପ୍ରସଙ୍ଗରେ ଉପସ୍ଥାପନ କରିଛନ୍ତି ।

ପୁସ୍ତକଟିରେ ଆମ ସମାଜର ସମସ୍ତ କର୍ମକ୍ଷେତ୍ରରେ ସାର୍ଥକତା ଅର୍ଜନ କରିଥିବା ଶହେ ଜଣ ବ୍ୟକ୍ତି ବିଶେଷଙ୍କର ଜାତକ ଆଲୋଚନା ମୁଖ୍ୟ ବିଷୟ ଭଳି ଆପାତତଃ ମନେ ହେଲେ ହେଁ, ଏଥିପ୍ରତି କ୍ୱଚିତ ଦୃଷ୍ଟି ଦିଆଯାଇଛି । ଜଣ ପ୍ରତି ଅର୍ଦ୍ଧ ପୃଷ୍ଠାରୁ ବେଶି ନୁହେଁ । ବରଂ, ଏହା ଆଉ ଟିକିଏ ବିସ୍ତୃତ ହେବାର ଥିଲା । ତଥାପି, ବାବରୀ ମସ୍‌ଜିଦ ଭାଙ୍ଗିବା ପାଇଁ ତତ୍କାଳୀନ ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ରାଶିଚକ୍ର କେତେଦୂର ଦାୟୀ, ଇନ୍ଦିରାଙ୍କ ବୈଧବ୍ୟ ଓ ଅପମୃତ୍ୟୁ ମୂଳରେ କି ପ୍ରକାର ଗ୍ରହ ପ୍ରଭାବ ନିହିତ, ବାଜପେୟୀ କାହିଁକି ଅବିବାହିତ, ଚନ୍ଦ୍ରସ୍ୱାମୀ ଓ ରଜନୀଶ ଧର୍ମ ସହ ରାଜନୀତି ଓ ଯୌନବିଳାସକୁ ଯୋଡ଼ିବା କେଉଁ ଗ୍ରହଙ୍କ ଯୋଗୁଁ ସମ୍ଭବ ହୋଇଛି, ସେସବୁ ଏଥିରେ କ୍ଲୁପ୍ତରେ ଆଲୋଚିତ ହୋଇଛି । ସାଧାରଣ ମୁଦ୍ରଣ ତ୍ରୁଟିକୁ ବାଦ୍ ଦେଲେ ଏ **ପୁସ୍ତକଟି ଜ୍ୟୋତିଷ ଗବେଷକ ତଥା ସଚେତନଶୀଳ ପାଠକଙ୍କ ପକ୍ଷେ ନିତାନ୍ତ ପଠନୀୟ ।**

**(୧୧) ନକ୍ଷତ୍ର, ମଇ-ଜୁନ-୨୦୦୨:-** ଲେଖକ ଶ୍ରୀ ଦଣ୍ଡପାଣି ପଣ୍ଡାଙ୍କର ଏହି ପୁସ୍ତକରେ ଭାରତର ଏକଶହ ବିଶିଷ୍ଟ ବ୍ୟକ୍ତିଙ୍କର ଜାତକ ଓ ଜୀବନୀ ଆଲୋଚନା ହୋଇଛି । ବିଭିନ୍ନ କ୍ଷେତ୍ରରେ କୃତୀ ହାସଲ କରିଥିବା ବ୍ୟକ୍ତିଙ୍କର ଜାତକରେ ଅନୁକୂଳ ଗ୍ରହାବସ୍ଥାନ ଓ ବିଭିନ୍ନ ଗ୍ରହଯୋଗ ଥିବା ହେତୁ ସେମାନଙ୍କର ଜୀବନରେ କିପରି ସଫଳତା ଓ ଖ୍ୟାତି ଲାଭ କରିଥିଲେ ତାହା ସମୀକ୍ଷା କରାଯାଇଛି ।

ଯେଉଁମାନେ ଜ୍ୟୋତିଷୀ କିମ୍ବା ଜ୍ୟୋତିଷ ପ୍ରେମୀ ସେମାନଙ୍କ ପାଇଁ ଏହି ପୁସ୍ତକଟି ପଥ ପ୍ରଦର୍ଶକ ହେବା ସଂଗେ ସଂଗେ ଯେଉଁମାନେ ଆମର କୃତୀ ସନ୍ତାନଙ୍କ ଜୀବନୀ ବିଷୟରେ ଇଚ୍ଛୁକ ସେମାନଙ୍କ ପାଇଁ ଏହା ଉପଯୁକ୍ତ ତଥ୍ୟ ପ୍ରଦାନ କରିବ ।

ଏହି ପୁସ୍ତକର ବିଶିଷ୍ଟତା ଏହି ଯେ, ଏଥିରେ ଭାରତ ବିଷୟରେ ସବୁ ସ୍ତରର ସଂକ୍ଷିପ୍ତ ତଥ୍ୟ ମଧ୍ୟ ଦିଆଯାଇଛି । ବୈଦିକ ଯୁଗଠାରୁ ଆରମ୍ଭ କରି, ସିନ୍ଧୁ ନଦୀ ସଭ୍ୟତା, ପୁରାଣ ଯୁଗ, ମୌର୍ଯ୍ୟ ଓ ଗୁପ୍ତ ଯୁଗ, ବିଦେଶୀ ଆକ୍ରମଣର ବୃତାନ୍ତ, ସ୍ୱାଧୀନତା ଆନ୍ଦୋଳନ, ସ୍ୱାଧୀନ ଭାରତର ସବୁ ଲୋକସଭା ନିର୍ବାଚନର ବିଭିନ୍ନ ରାଜନୈତିକ ଦଳ ଇତ୍ୟାଦି ବିଷୟରେ ଆଲୋଚନା ହୋଇଛି ।

**ଏହି ପୁସ୍ତକଟି ବିଦ୍ୟାର୍ଥି, ଶିକ୍ଷକ, ଲେଖକ ଆଦି ସମାଜର ସବୁସ୍ତରର ବ୍ୟକ୍ତିଙ୍କ ପାଇଁ ରେଫରେନ୍ସ ପୁସ୍ତକ ଭାବେ ଆବଶ୍ୟକ ହେବ ।**

(୧୨) ଭାଗ୍ୟଲିପି, ଜୁଲାଇ-୨୦୦୨:- ଶ୍ରୀଯୁକ୍ତ ଦଣ୍ଡପାଣି ପଣ୍ଡାଙ୍କର ଏହି ପୁସ୍ତକଟି ଏକ ବିଶିଷ୍ଟ କୃତି । ଏହି ପୁସ୍ତକରେ ଭଗବାନ ଶ୍ରୀ ରାମ, ଶ୍ରୀକୃଷ୍ଣ, ଆଦି ଶଙ୍କରାଚାର୍ଯ୍ୟଙ୍କ ଠାରୁ ଆରମ୍ଭ କରି ଅନେକ ମହାପୁରୁଷ, ସାଧୁ, ସନ୍ଥ, ଶିକ୍ଷାବିତ୍, କବି, ଲେଖକ, ଜ୍ୟୋତିର୍ବିଜ୍ଞାନୀ, ବୈଜ୍ଞାନିକ, ଚିକିତ୍ସକ, ରାଜା, ମହାରାଜା, ସ୍ୱାଧୀନତା ସଂଗ୍ରାମୀ, ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ଶାସକ, କଳାକାର, ଚିତ୍ରତାରକା, ଖେଳାଳି ପ୍ରଭୃତି ବିଭିନ୍ନ ଦିଗରେ କୃତିତ୍ୱ ଅର୍ଜନ କରିଥିବା ବ୍ୟକ୍ତିମାନଙ୍କର ଜାତକ ସହିତ ଜୀବନର କର୍ମ କ୍ଷେତ୍ରରେ କିପରି ସାମଞ୍ଜସ୍ୟ ଅଛି ତାହା ଆଲୋଚନା ହୋଇଛି ।

ଏଥିସହିତ ବିଭିନ୍ନ କ୍ଷେତ୍ରରେ ପ୍ରାଚୀନ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ଭାରତର ବିକାଶ ଧାରା ସଂକ୍ଷିପ୍ତ ବିବରଣୀ ମଧ୍ୟ ଦିଆଯାଇଛି । ବୈଦିକ ଯୁଗ, ପୁରାଣ ଯୁଗ, ରାମରାଜ୍ୟ, ଆର୍ଯ୍ୟ ସଭ୍ୟତା, ସଂସ୍କୃତ ଭାଷା, ମହାଭାରତ ଯୁଦ୍ଧ, ବିଭିନ୍ନ ଧର୍ମ. ବୈଦେଶିକ ଶାସନ, ସ୍ୱାଧୀନତା ସଂଗ୍ରାମ, ଲୋକସଭା ନିର୍ବାଚନ, ବିଭିନ୍ନ ରାଜନୈତିକ ଦଳ ଇତ୍ୟାଦି ବିଷୟରେ ଯଥା ସ୍ଥାନରେ ସଂକ୍ଷିପ୍ତ ଆଲୋଚନା କରାଯାଇଛି । ଏହା ଏକ ତଥ୍ୟ ସମ୍ବଳିତ ପୁସ୍ତକ । ସବୁ ସ୍ତରର ପାଠକଙ୍କ ଦ୍ୱାରା ଏହା ଆଦୃତ ହେବା ମନେହୁଏ ।

ଶ୍ରୀଯୁକ୍ତ ପଣ୍ଡା ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକ ରଚନାରେ ଦୁଇଟି ମାଇଲ୍ ଖୁଣ୍ଟ ପ୍ରତିଷ୍ଠା କରିଛନ୍ତି । ପ୍ରଥମଟି ହେଲା ଓଡ଼ିଶାର ୧୦୦ଜଣ କୃତୀ ସନ୍ତାନଙ୍କ ଜାତକ ବିଚାର ଏବଂ ଦ୍ୱିତୀୟଟି ହେଲା ଭାରତବର୍ଷର କୃତୀ ସନ୍ତାନମାନଙ୍କ ଜୀବନୀ ଓ ଜାତକ ନେଇ ଏହି ପୁସ୍ତକ । ଏ ପର୍ଯ୍ୟନ୍ତ ଏତେ ପରିଶ୍ରମ କରି ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ବହୁ କମ୍ ସାଧକ ଭିବିଷ୍ୟତ ପାଇଁ ସେମାନଙ୍କୁ ପ୍ରତିଷ୍ଠିତ କରିଛନ୍ତି । ଶ୍ରୀ ପଣ୍ଡାଙ୍କ ଦୀର୍ଘାୟୁ କାମନା ସଙ୍ଗେ ସଙ୍ଗେ ଆମେ ଏଭଳି ଆଉ କେତେକ କୃତୀ ଜ୍ୟୋତିର୍ବିଦ୍‌ମାନଙ୍କ ପାଠାଗାର ପାଇଁ ଆଶା କରୁ । ତାଙ୍କ ଲେଖନୀ ସଦା ଚଞ୍ଚଳ ରହୁ ।

(୧୩) ଧରିତ୍ରୀ, ତା ୧୮.୮.୨୦୦୨ :- ଜାତକ ହେଉଛି ଜୀବନର ପ୍ରତିବିମ୍ବ । ପ୍ରତିଭାବାନ୍ ବ୍ୟକ୍ତିମାନଙ୍କର ଜାତକରେ କେଉଁ ଧରଣର ଅନୁକୂଳ ଗ୍ରହାବସ୍ଥାନ ଯୋଗୁ ସେମାନଙ୍କ ଜୀବନରେ କୃତିତ୍ୱ ହାସଲ କରିପାରିଲେ ତାହା ଆଲୋଚନା କଲେ ଜ୍ୟୋତିଷ ଭଳି ଏକ ବୈଦିକ ପ୍ରଜ୍ଞା ପ୍ରତି ଆସ୍ଥା ଓ ଆଦର ପ୍ରକାଶ ପାଇବ । ଏହା ଫଳିତ ଜ୍ୟୋତିଷକୁ ପ୍ରମାଣିତ କରିବା ସଙ୍ଗେ ସଙ୍ଗେ ଏହାର ମହତ୍ତ୍ୱ ମଧ୍ୟ ବୃଦ୍ଧିକରିବ । ଏହି କଥାକୁ ଧ୍ୟାନରେ ରଖି ଲେଖକ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଲାଭ କରିଥିବା ବ୍ୟକ୍ତିବିଶେଷଙ୍କର ଜାତକ

ସଂଗ୍ରହ କରି ସେମାନଙ୍କ ଜୀବନ ସହିତ ଏହାର ସାମଞ୍ଜସ୍ୟକୁ ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ଏଥିରେ ଭଗବାନ ରାମଚନ୍ଦ୍ର, ଶ୍ରୀକୃଷ୍ଣଙ୍କ ଠାରୁ ଆରମ୍ଭ କରି ଭାରତର ମହାପୁରୁଷ, ସାଧୁ, ସନ୍ଥ, ପଣ୍ଡିତ, ଶିକ୍ଷାବିତ୍, କବି, ଲେଖକ, ଜ୍ୟୋତିର୍ବିଦ୍, ରାଜା, ମହାରାଜା, ଶାସକ, ପ୍ରଶାସକ, ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ସ୍ୱାଧୀନତା ସଂଗ୍ରାମୀ, ଚିକିତ୍ସକ, ସାଂସଦ, ଆଇନଜ୍ଞ, ବୈଜ୍ଞାନିକ, କଳାକାର, ଚିତ୍ରତାରକା, ଖେଳାଳୀ ପ୍ରଭୃତି ବିଭିନ୍ନ ଦିଗରେ କୃତୀ ସନ୍ତାନମାନଙ୍କ ଜାତକ ଓ ଜୀବନୀ ରହିଛି । ପୁସ୍ତକଟି ଫଳିତ ଜ୍ୟୋତିଷ ଶାସ୍ତ୍ର ପାଇଁ ଏକ ଅନବଦ୍ୟ । ତେଣୁ ଜନସାଧାରଣଙ୍କ ମଧ୍ୟରେ ଯେ, ଏହା ଅତ୍ୟନ୍ତ ଲୋକପ୍ରିୟ ହେବ ଏଥିରେ ସନ୍ଦେହ ନାହିଁ ।

**(୪) ନିୟତି, ପୂଜା ସଂଖ୍ୟା, ଅକ୍ଟୋବର, ୨୦୦୨ - ଜାତକ ସହିତ ଜୀବନର କର୍ମକ୍ଷେତ୍ରରେ କିପରି ସାମଞ୍ଜସ୍ୟ ଅଛି, ତାହା ଜାଣିଲେ ଜ୍ୟୋତିଷର ଉପାଦୟତା ପ୍ରତି ଜନ ସାଧାରଣଙ୍କର ବିଶ୍ୱାସ ଆସେ । ଜ୍ୟୋତିଷ ପ୍ରତି ଯାହାର ଆଗ୍ରହ ଅଛି ଏବଂ ଯେଉଁମାନେ ଜ୍ୟୋତିଷୀ, ସେମାନେ ମଧ୍ୟ ଏହି ପୁସ୍ତକରୁ କିଛି ଦିଗ୍‌ଦର୍ଶନ ପାଇପାରିବେ । ଶ୍ରୀ ପଣ୍ଡାଙ୍କର ଏହି ପୁସ୍ତକଟି ଓଡ଼ିଆ ପାଠକ ପାଠିକାଙ୍କ ଦ୍ୱାରା ଆଦୃତ ହେବାରେ ଅନେକ ସମ୍ଭାବନା ସୃଷ୍ଟି କରିଛି ।**

# Utkal University




DIPLOMA FOR MASTER OF ARTS

This is to certify that

*Damodarpani Pradhan*

a non-collegiate. candidate

who passed the examination for the degree of

## Master of Arts

held in the month of *November*. 1970. with the following special papers. and was placed in the *Second* Class in *Public Administration* was this day admitted to the degree.

Special papers :—

1. *Organisation & Management*
2. *Personnel Administration*

UTKAL UNIVERSITY
VANI VIHAR
BHUBANESWAR

The *30 September* 1972

*R. Mohanty*
Vice-Chancellor

SAMANTA CHANDRASEKHAR SMRUTI PARISAD

BHUBANESWAR

(Registered under the Registration of Societies Act XXI of 1860 as a Society devoted to the cause of Astronomy, Astrology & Other Allied Studies)

## ଶ୍ରୀଯୁକ୍ତ ଦଣ୍ଡପାଣି ପଣ୍ଡା, ଗଞ୍ଜାମ

ଶ୍ରୀଯୁକ୍ତ ପଣ୍ଡା ଗଞ୍ଜାମ ଜିଲ୍ଲାର ବୁଢ଼ାଖଣ୍ଡି ଗ୍ରାମରେ ୧୯୨୪ ମସିହା ଅକ୍ଟୋବର ୧୪ ତାରିଖରେ ଜନ୍ମଗ୍ରହଣ କରିଥିଲେ । ସେ ବ୍ରହ୍ମପୁର ଖଲ୍ଲିକୋଟ କଲେଜରୁ ସ୍ନାତକ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମହାଲେଖାପାଳ, ଓଡ଼ିଶା, ଭୁବନେଶ୍ୱରଙ୍କ ଦପ୍ତରରେ କାର୍ଯ୍ୟ ନିର୍ବାହ କରି ନଭେମ୍ବର ୧୯୮୨ ମସିହାରେ ଅବସର ଗ୍ରହଣ କରିଛନ୍ତି ।

ଜ୍ୟୋତିର୍ବିଜ୍ଞାନରେ ତାଙ୍କର ରୁଚିଥିବା ହେତୁ ୧୯୮୩ ମସିହାରେ ସାମନ୍ତ ଚନ୍ଦ୍ରଶେଖର ସ୍ମୃତିପରିଷଦ ଦ୍ୱାରା ଅନୁଷ୍ଠିତ 'ଜ୍ୟୋତିଷ ପ୍ରବୀଣ' ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ୧୯୯୦ ମସିହାରେ ତାଙ୍କର ପ୍ରଥମ ଜ୍ୟୋତିଷ ପୁସ୍ତକ 'ଗଣିତ ଜ୍ୟୋତିଷ' ପ୍ରକାଶ ପାଇଥିଲା ଓ ଏହି ପୁସ୍ତକ ପାଇଁ ୧୯୯୧ ମସିହାରେ ସାମନ୍ତ ଚନ୍ଦ୍ରଶେଖର ସ୍ମୃତିପରିଷଦରୁ ବାଗଲୋଜି ଜ୍ୟୋତିଷ ପୁରସ୍କାର ଲାଭ କରିଥିଲେ ।

୧୯୯୩ ମସିହାରେ ସେ Rationale of Astrology ନାମକ ଏକ ଜ୍ୟୋତିଷ ପୁସ୍ତକ ପ୍ରକାଶ କରିଛନ୍ତି ଓ ଏହି ପୁସ୍ତକଟି ଜନସାଧାରଣରେ ଉଚ୍ଚ ପ୍ରଶଂସିତ ହୋଇଛି । ବର୍ତ୍ତମାନ ସୁଦ୍ଧା ଓଡ଼ିଶା ଓ ଓଡ଼ିଶା ବାହାରେ ବହୁ ପ୍ରତିଷ୍ଠିତ ଜ୍ୟୋତିର୍ବିଜ୍ଞାନ ପତ୍ରପତ୍ରିକା ମାନଙ୍କରେ ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ତାଙ୍କ ବହୁ ତର୍କ ଉଚ୍ଚକୋଟୀର ପ୍ରବନ୍ଧମାନ ପ୍ରକାଶିତ ।

ଶ୍ରୀଯୁକ୍ତ ପଣ୍ଡାଙ୍କୁ ୧୯୯୨ ମସିହାରେ ହାଇଦ୍ରାବାଦସ୍ଥିତ The International Council of Astrological and Occult Studies ତରଫରୁ 'ଜ୍ୟୋତିଷ ବାଚସ୍ପତି' ଉପାଧି ଓ ୧୯୯୪ ମସିହାରେ ଓଡ଼ିଶାର ନିୟତି ଜ୍ୟୋତିର୍ବିଜ୍ଞାନ ମହାସଭା 'ଜ୍ୟୋତିର୍ବିଦ୍ୟା ବିଶାରଦ' ଉପାଧି ପ୍ରଦାନ କରିଛନ୍ତି ।

ଗଣିତ ଜ୍ୟୋତିଷର ମର୍ଯ୍ୟାଦା ପ୍ରତିଷ୍ଠିତ କରିବା ସହ ଫଳିତ ଜ୍ୟୋତିଷ ପ୍ରତି ସମାଜରେ କେତେକ ଲୋକର ଯେଉଁ ନାସ୍ତିକ ଧାରଣା ରହିଛି ତାହା ଦୂର କରିବା ସଙ୍ଗେ ସଙ୍ଗେ ଏହି ଆଧ୍ୟାତ୍ମିକ ବିଦ୍ୟାର ପ୍ରଚାର ଓ ପ୍ରସାର ତାଙ୍କର ଲକ୍ଷ୍ୟ ।

ଶ୍ରୀଯୁକ୍ତ ପଣ୍ଡାଙ୍କ ପରି ଜଣେ ଉତ୍ସର୍ଗୀକୃତ ପ୍ରାଣ, ଉଦ୍ୟମୀ, ତ୍ୟାଗନିଷ୍ଠ, ସୁଧୀ ସାଧକଙ୍କୁ ସାମନ୍ତ ଚନ୍ଦ୍ରଶେଖର ସ୍ମୃତି ପରିଷଦ ଆଜି ସାମନ୍ତ ଚନ୍ଦ୍ରଶେଖରଙ୍କର ଏହି ପବିତ୍ର ଜନ୍ମ ଉତ୍ସବ ତଥା ଉନବିଂଶତମ ସମାବର୍ତ୍ତନ ଉତ୍ସବରେ ସମ୍ମାନ ସୂଚକ "ଜ୍ୟୋତିର୍ବିଦ୍ୟା ବାଚସ୍ପତି" ଉପାଧିରେ ଅଳଙ୍କୃତ କରୁଅଛି ।

ସଭାପତି

୧୧।୧୨।୯୮



SAMANTA CHANDRASEKHAR SMRUTI PARISAD
BHUBANESWAR

( Registered under the Registration of Societies Act XXI of 1860 as a Society devoted to the cause of Astronomy, Astrology & Other Allied Studies. )

*This is to Certify that the Title of*

JYOTIRBIDYA BACHASPATI (ଜ୍ୟୋତିର୍ବିଦ୍ୟା ବାଚସ୍ପତି)

*has been conferred, Honoris causa*
*This* 11th. *day of* December 1998
*on*
*Pandit* Dandapani Panda
*of* Bhubaneswar
*as a mark of personal distinction in recognition of his contribution to the cause of* JYOTISHA

Samanta Chandrasekhar Smruti Parisad
BHUBANESWAR
The 11th. December 1998.

PRESIDENT
(B. R. PATEL, O.A.S. Retd.

## ଶ୍ରୀ ଦଣ୍ଡପାଣି ପଣ୍ଡାଙ୍କ ଦ୍ୱାରା ଲିଖିତ ପୁସ୍ତକ :-

୧. ଫଳିତ ଜ୍ୟୋତିଷ

୨. RATIONALE OF ASTROLOGY

୩. ଓଡ଼ିଶାର କୃତୀ ସନ୍ତାନଙ୍କ ଜାତକ ଓ ଜିବନୀ
(ପ୍ରଥମ ଭାଗ)

୪. ଭାରତର ଏକଶହ କୃତୀ ସନ୍ତାନଙ୍କ ଜାତକ ଓ ଜିବନୀ